# ବୃହତ୍
# ପାଚନ ସଂଗ୍ରହ

ମୁନସି ହକିମ୍ ଶେଖ୍ ଅବଦୁଲ୍ ଅଜିଜ ଅଣଡ଼ଙ୍କ ରଚିତ
ଶ୍ରୀ ଦାଶରଥି ଦାସଙ୍କ ଦ୍ୱାରା ପ୍ରକାଶିତ

---

ଆୟୁର୍ବେଦ ଶାସ୍ତ୍ରୁ ପାଚନ ସଂଗ୍ରହ ହୋଇଲା ଭାଷାନ୍ତରେ ମନ
ନରନାରୀ ଅଧ ହୃଦୟର ଭାବ ଭରନ୍ତୁ ଅତି ଯତନ ॥
ମୁନସି ହକିମ୍ ସେଖ୍ ଅବଦୁଲ୍ ଅଜିଜ୍ ଅଣଡ଼ ଘୁର
ପ୍ରାଣଦେମ ପ୍ରଭାଷ ଭଲେ ସୃଷ୍ଟି ହେବ ନବ ନବ ଗ୍ରନ୍ଥସାର ॥

—ପ୍ରଥମ ସଂସ୍କରଣ—

ପ୍ରାପ୍ତିସ୍ଥାନ
ଦାଶରଥି ପୁସ୍ତକାଳୟ
ବାଲୁବଜାର, କଟକ
ପୋ: ଚାନ୍ଦନୀଚୌକ

ମୂଲ୍ୟ ଟ ୦ ।୵ ଛଅଣାମାତ୍ର ।

# ବୃହତ୍
# ପାଚନ ସଂଗ୍ରହ

---

## ପାଚନ, କଷାୟ ବା କ୍ୱାଥ ବିଧି

ଔଷଧ ଦ୍ରବ୍ୟ ସମାନ ସମାନ ଭାଗରେ ସମସ୍ତ ଏକତ୍ରିତ ,ଦୁଇ ତୋଳା, ଜଳ ୩୨ ତୋଳାରେ ସିଦ୍ଧ କରିବ । ପାକାବଶେଷ୍ଟ ବା ଚତୁର୍ଥାଂଶ ୮ ତୋଳା ଥାଉଁ ଓହ୍ଲାଇ ରଖିବ । ଶୀତଳ ହେଲେ ଛାଣି ପାନ କରିବ ।

## ଷଡ଼ଙ୍ଗ ପାନୀୟ

ମୁଥା, ଘରପୋଡ଼ଥ, ବେଣାଚେର, ରକ୍ତଚନ୍ଦନ, କ୍ଷୁଦ୍ରବେଲ, ଶୁଣ୍ଠୀ ଏହି ଦ୍ରବ୍ୟ ସମସ୍ତଙ୍କୁ ସମାନ ଅଂଶରେ ୨ ତୋଳା, ୪ସେର ଜଳରେ ସିଦ୍ଧକରି ସେରକ ଥାଉଁ ଓହ୍ଲାଇ ରଖିବ । ଶୀତଳ ହେଲେ ଜ୍ୱର [illegible] ପାନ କରିବାକୁ ଦେବ, ଏଥିରେ ଜ୍ୱର ଓ ପି[illegible] ନିବୃତ୍ତ[illegible] ।

## ଧାନ୍ୟ ପଟୋଳ କଷାୟ

ଶୁଖିଲା ଧନିଆଁ, ପଟୋଳ ପତ୍ର, ପ୍ରତ୍ୟେକ ୧ ତୋଳା; ଅର୍ଦ୍ଧ-ସେର ଜଳରେ ସିଦ୍ଧକରି ଅଧପାଆ ଥାଉଁ ଓହ୍ଲାଇ ରଖିବ । ଏହା ସମସ୍ତ ରୋଗରେ ସେବନ କଲେ ଆମ ଦୋଷର ପରିପାକ ହୁଏ । ଏହା ଅଗ୍ନିକର, ପାଚକ, ଭେଦକ ତୃଷ୍ଣାନାଶକ ଓ ବାତ ପିତ୍ତର ଅନୁଲୋମକ ଓ ଜ୍ୱର ନାଶକ ।

## ନବଜ୍ୱର ଓ ବାତିକ ଜ୍ୱରର ପାଚନ

ବଲ୍ୟାଦ ପଞ୍ଚମୂଳୀ ପାଚନ—ବେଲମୂଳ ଛେଲି, ଫଣଫଣା, ଗମ୍ଭାରି, ଅଗିବଥୁ ଛେଲି, ପାଟଳୀ ଏ ସମସ୍ତ ମିଶି ୨ ତୋଳା କମ୍ବା ପିପଳୀମୂଳ, ଗୁଳୁଚ, ଶୁଣ୍ଠୀ ଏମାନଙ୍କର ୨ ତୋଳା, ଜଳ ୩୨ ତୋଳାରେ ସିଦ୍ଧକରି ଚତୁର୍ଥାଂଶ ୮ତୋଳା ଥାଉଁ ଓହ୍ଲାଇ ରଖିବ । ଶୀତଳ ହେଲେ ପାନ କରିବାକୁ ଦେବ ।

ଗୁଡ଼ୁଚ୍ୟାଦ୍ୟ ପାଚନ—ଗୁଡ଼ୁଚି, ଧନିଆଁ, ନିମ୍ବଛେଲି, ପଦ୍ମକାଠ, ରକ୍ତଚନ୍ଦନ ଏମାନଙ୍କରୁ ସମାନ ଅଂଶରେ ୨ ତୋଳା ନେଇ ପାଚନ କଲେ ସକଳ ପ୍ରକାର ଜ୍ୱର ନିବାରଣ କରେ ।

ଆରଗ୍ୱଧାଦ୍ୟ ପାଚନ—ସୁନାରିଫଳ ଅଠା, ପିପ୍ପଳୀ ମୂଳ, ମୁଥା, ଚିହୁଡ଼ା, ହରିଡ଼ା ଏମାନଙ୍କର ପାଚନରେ ବେଦନା ଆମସଂଯୁକ୍ତ ସକଳ ପ୍ରକାର ଜ୍ୱର ଭଲ ହୁଏ । ଏହା ଆମଦୋଷ ପରିପାଚକ ଅଗ୍ନିର ଦୀପ୍ତି କାରକ ।

କିରାତାଦ୍ୟ ପାଚନ—ଚିରେଇତା, ମୁଥା, ଗୁଳୁଚ, ଶୁଣ୍ଠୀ ଅଭାଳକ୍ରାନ୍ତ ମୂଳ, ବଇଁଶଚେର, କୁରୁଚେଲି ଏମାନଙ୍କର ପାଚନ ସେବନ କଲେ ସକଳ ପ୍ରକାର ଜ୍ୱର ନିବାରଣ ହୁଏ ।

ଶୁଣ୍ଠ୍ୟାଦ୍ୟ ପାଚନ—ଶୁଣ୍ଠୀ, ଚିରେଇତା, ମୁଥା; ଗୁଳୁଚି, ଏମାନଙ୍କର ପାଚନରେ ବାତିକ ଜ୍ୱର ଅବଶ୍ୟ ଭଲ ହୁଏ ।

କିରାତାଦ୍ୟ ପାଚନ—ଚିରେଇତା, ମୁଥା, ଗୁଳୁଚ, କୁରୁଚେଲି ବୃହତ, ଲଟାବେଙ୍ଗବାଲ, ଅଶ୍ୱଗନ୍ଧ, ଗୋକ୍ଷୁରା, ଶାଳପର୍ଣ୍ଣି ଗୁଳୁଳିଆ (କୃଷ୍ଣପର୍ଣ୍ଣି), ଶୁଣ୍ଠୀ ଏମାନଙ୍କର ପାଚନରେ ମଧୁ ପକ୍ଷେପ ଦେଇ ପିଇଲେ ବାତିକ ଜ୍ୱର ନିବାରଣ ହୁଏ ।

ଗୁଡୁଚାଦ୍ୟ ପାଚନ—ଗୁଡ଼ୁଚି, ଅନନ୍ତମୂଳ, ଚମିଢ଼ନଇ ମୂଳ, ଦ୍ରାକ୍ଷା, ବାଡ଼ଅଁଳା, ଶାଳପର୍ଣ୍ଣି ଏମାନଙ୍କ ପାଚନରେ ବାତିକ ଜ୍ୱର ଭଲହୁଏ । ଏହା ଗୋଟିଏ ପ୍ରତ୍ୟକ୍ଷ ଫଳପ୍ରଦ ଔଷଧ ।

ରାସ୍ନାଦି ପାଚନ—ରାସ୍ନା ମଞ୍ଜିଷ୍ଠ; ଦେବଦାରୁ; ସରଳ କାଠ ଓ ଏଳାବାଲୁକ ( ଗନ୍ଧଳକୁକା ) ଏହି ଦ୍ରବ୍ୟମାନଙ୍କର କ୍ୱାଥରେ ପୁରୁଣା ଗୁଡ଼ ୨୪ ମଷା ପରକ୍ଷ ଦେଇ ପିଇବ ।

ନାଗରାଦି ପାଚନ—ଶୁଣ୍ଠୀ, ଦେବଦାରୁ, ଧନିଆ, କଣ୍ଟା-ବେଙ୍ଗକୋଳି ଓ ଅଙ୍କରାନ୍ତ୍ର ଏହି ସକଳ ଦୁଇ ତୋଳାକୁ ପାଚନ କରି ଜ୍ୱରର ପ୍ରଥମ ଅବସ୍ଥାରେ ବ୍ୟବହାର କରିଲେ ଜ୍ୱର ଆରୋଗ୍ୟ ହେବ ।

କିଂଶପାଦି କଷାୟ—ଜଳର ଦ୍ୱିଗୁଣ ଦୁଧ ସହିତ ଶିଶୁକାଠ ଓ ବେଣାଚେର ସିଦ୍ଧକରି ଅବଶିଷ୍ଟ ରଖି ଓହ୍ଲାଇ ପାନ କରିଲେ ସକଳ ପ୍ରକାର ଜ୍ୱର ଆରୋଗ୍ୟ ହୁଏ ।

ବୃଷ୍ଟିରାଦି ପାଚନ—ଶ୍ୱେତପୁନର୍ଣ୍ଣବା, ବେଲଛେଲି ଓ ରକ୍ତପୁନର୍ଣ୍ଣବା ସମାନ ଅଂଶେ ଦୁଇତୋଳା ନେଇ ଅଧପାଏ ଦୁଧ ଓ ଅଧସେର ପାଣି ସହିତ ସିଦ୍ଧକରି ଦୁଧ ଅବଶିଷ୍ଟ ଥାଉଁ ଓହ୍ଲାଇ ପାନ କରାଇଲେ ସକଳ ପ୍ରକାର ଜ୍ୱର ଭଲ ହୁଏ ।

ଦ୍ରାକ୍ଷାଦି ପାଚନ—ଦ୍ରାକ୍ଷା, ଗୁଡ଼ୁଚି, ଗମ୍ଭାରିଫଳ, ଖୁରୁବେଲ, ଓ ଚେମିଡ଼ିନାଇ ମୂଳ ସମାନ ଅଂଶରେ ଦୁଇତୋଳା ନେଇ କ୍ୱାଥକରି ଗୁଡ଼ ଅନୁପାନରେ ସେବ୍ୟ, ନାନାପ୍ରକାର ବାତଜ ଜ୍ୱର ଭଲ ହୁଏ ।

ଷଡ଼ଙ୍ଗାଦ୍ୟ ପାଚନ—ବଚ, ମୁଥାଣି, ଧନିଆଁ ଓ ଶୁଣ୍ଠୀ ଏହାଙ୍କ ଯଥାବିଧି କ୍ୱାଥ କରି ସକାଳେ ଜନ୍ମ ଅବସ୍ଥାରେ ପାନ କଲେ ଜ୍ୱର ସମ୍ବନ୍ଧୀୟ ଅଗ୍ନି ରସ ପରିପାକ ପାଏ ଏବଂ ବାତଜ୍ୱର ଭଲ ହୁଏ ।

ଶାଳପର୍ଣ୍ଣାଦି ପାଚନ—ଶାଳପର୍ଣ୍ଣି, ବଡ଼ଅଁଳା, ରାସ୍ନା; ଗୁଳୁଚି, ଚେମିଡ଼ିନାର ମୂଳ ପ୍ରତ୍ୟେକ ସମାନ ଅଂଶେ ଦୁଇ ତୋଳାର କ୍ୱାଥ କରି ପାନକଲେ ଜ୍ୱର ଭଲ ହୁଏ ।

ପିପ୍ପଳାଦି କଷାୟ—ପିପ୍ପଳୀ, ଅନନ୍ତମୂଳ, ଦ୍ରାକ୍ଷା, ଗୁଡ଼ୁଚି ବେଣ୍ଟକ ମଞ୍ଜି ଏମାନଙ୍କ କ୍ୱାଥରେ ସୁବର୍ଣ୍ଣ ଓଜନର ଗୁଡ଼ ପକ୍ଷେପ ଦେଇ ପାନ କଲେ ବାତଜ ଜ୍ୱର ନଷ୍ଟ ହୁଏ ।

ଭୂନିମ୍ବାଦ ପାଚନ—ଶିରାଇତା, ମୁଥା, କୁଳୁଚେକିଲ, ଅଙ୍କରାନ୍ତ, ବୃହତୀ ବା ଡେଙ୍ଗାଭେଜି ଗୁଳୁଚି, ଗୋକ୍ଷୁର ଶୁଣ୍ଠି, କୃଷ୍ଣପର୍ଣ୍ଣି ଶାଳପର୍ଣ୍ଣି, କୁଡ଼ ଏମାନଙ୍କ କ୍ୱାଥରେ ବାତିକ ଜ୍ୱର ନଷ୍ଟ ହୁଏ ।

ଦୁରାଲଭାଦ ପାଚନ—ଦୁରାଲଭା ; ଶୁଣ୍ଠି, କଣ୍ଟକି, ଅଙ୍କୋଳବନ୍ଦୁ-ମୂଳ, ବାସଙ୍ଗମୂଳ, ଏରଣ୍ଡମୂଳ ( ଗବମୂଳ ) ଏହାର ପାଚନ ଟ୍ରସ-ବନ କଲେ ଶ୍ୱାସ, କାସ ବେଦନା ସଂଯୁକ୍ତ ବାତିକ ଜ୍ୱର ଭଲ ହୁଏ ।

ବଣ୍ଠ୍ୟାଦ ପାଚନ—ଶୁଣ୍ଠି, ଗୁଡ଼ୁଚି, ପିମ୍ପୁଳୀମୂଳ ଏମାନଙ୍କ ପାଚ-ନରେ ବାତିକଜ୍ୱର ଭଲହୁଏ କମ୍ବା ଧନିଆଁ ଦେବଦାରୁ, ଅଙ୍କରାନ୍ତ ଶୁଣ୍ଠି ଏମାନଙ୍କ ପାଚନରେ ବାତିକଜ୍ୱର ଭଲହୁଏ ।

ଶତ ପୁଷ୍ପାଦ ପାଚନ—ଶୌପ, ବଚ, କୁଡ଼ଦେବଦାରୁ, ରେଣକ ମଞ୍ଜି, ଧନିଆଁ କେଣାମୂଳ, ମୁଥା ଏମାନଙ୍କ ପାଚନରେ ମ ୨୪ ଷା ବନ୍ଦ ଓ ର୧୦ଭି ମହୁ ପରଶ ଦେଇ ପିଇଲେ ବାତିକ ଜ୍ୱର ଭଲ ହୁଏ ।

ଶ୍ରୀଫଳାଦ ପାଚନ—ବେଲମୂଳ ଛେଲି, ଗମ୍ଭାରି ଛେଲି, ପାରୁଳ ଛେଲି, ଫଣଫଣା ଛେଲି, ଅଟିବଥ ଛେଲି, ଗୋକ୍ଷୁରା, ଅଙ୍କ-ରାନ୍ତ, ବୃହତୀ, କୃଷ୍ଣବର୍ଣ୍ଣ, ଶାଳଂର୍ଣ୍ଣି, ରାସ୍ନା ପିମ୍ପୁଳୀମୂଳ, କୁଡ଼ ଶୁଣ୍ଠି ଚିରାଇତା, ମୁଥା, ଗୁଡ଼ୁଚି, ଦୁବା ଦ୍ରାକ୍ଷା, ଦୁରାଲଭା, ।ଶ୍ଲୌଏ ଏ-ମାନଙ୍କ ପାଚନ ସେବନ କଲେ ଜ୍ୟଦ୍ରବ୍ୟ ସଂଯୁକ୍ତ ବାତିକ ଜ୍ୱର ଅବେଗ୍ୟ ହୁଏ ।

କଣାଦ ପାଚନ—ପିପ୍ପଳୀ, ରସୁଣ, ଗୁଳୁଚି, ଶୁଣ୍ଠି, ଅଙ୍କରାନ୍ତ, ବେଗୁନିଆଁ ପନ୍ତ, ଚିରାଇତା, ମୁଥା, ଏମାନଙ୍କ ପାଚନ ସେବନ କଲେ ବାତିକଜ୍ୱର, ଶ୍ଳୈଷ୍ମିକଜ୍ୱର, ଅଗ୍ନିମାନ୍ଦ୍ୟ, କଣ୍ଠ ଓ ହୃଦୟର ଅବରୋଧ, ଘର୍ମ ହିକ୍କା, ହୃମାଙ୍ଗ, ମୂର୍ଚ୍ଛା ନିବାରିତ ହୁଏ ।

———

## ପିତ୍ତଜ୍ୱର ପାଚନ

ଛିନ୍ନାଦି ପାଚନ—ଗୁଳୁଚି, ମୁଥା, ଯବକ୍ଷାର, ଅଗ୍ନିମନ୍ଥମୂଳ, ହରିତକୀ (ଭାଇଗ୍ଲଇ) ଏମାନଙ୍କ କ୍ୱାଥରେ ଶର୍କରା ପ୍ରକ୍ଷେପ କରି ପାନ କଲେ ପିତ୍ତଜ୍ୱର, ଆମଦୋଷ ଭଲ ହୁଏ ।

ନାଗରାଦି ପାଚନ—ଶୁଣ୍ଠି, ବେଣାଚେର, ମୁଥା, ରକ୍ତଚନ୍ଦନ, କଟୁକୀ ଓ ଧନିଆଁ ଏମାନଙ୍କ ପାଚନରେ ପିତ୍ତଜ୍ୱର ଦୂରୀଭୂତ ହୁଏ ।

ପର୍ପଟାଦି ପାଚନ—ଏକମାତ୍ର କ୍ଷେତପାପଡ଼ା (ଘରପୋଡ଼ିଆ) କ୍ୱାଥରେ ପିତ୍ତଜ୍ୱର ନଷ୍ଟ ହୁଏ । କ୍ଷେତପାପଡ଼ା ସହିତରେ ରକ୍ତଚନ୍ଦନ କୁଚୁଟେଲ, ଶୁଣ୍ଠି ମିଶ୍ରିତ କରି ପାଚନ ପ୍ରସ୍ତୁତ କଲେ ଅଧିକ ଫଳପ୍ରଦ ହୁଏ ।

ହ୍ରୀବେରାଦି ପାଚନ—କୁଚୁଟେଲ, ରକ୍ତଚନ୍ଦନ, ବେଣାଚେର, ମୁଥା ଓ କ୍ଷେତପାପଡ଼ା ଏମାନଙ୍କ ପାଚନ ଶୀତଳ କରି ସେବନ କଲେ ପିପାସା, ବାନ୍ତି, ଜ୍ୱର ଦାହ ନିବାରିତ ହୁଏ, ଅନୁପାନ ମହୁ ଅଥବା ପଟୋଳପତ୍ର ଓ ଯବଧାନ ଏହି ଦ୍ରବ୍ୟର କ୍ୱାଥରେ ମହୁ ଦେଇ ଖାଇବ ।

ପଟୋଳାଦି ପାଚନ—ପଟୋଳପତ୍ର । ଯବ, ଧନିଆଁ, ଦ୍ରାକ୍ଷା ମଧୁ ଏମାନଙ୍କ କ୍ୱାଥରେ ମଧୁ ପକ୍ଷେପ ଦେଇ ସେବନ କଲେ ପିତ୍ତଜ୍ୱର, ଦାହ ପ୍ରବଳ ପିପାସାର ଶାନ୍ତି ହୁଏ ।

କଳିଙ୍ଗାଦି ପାଚନ—ଇନ୍ଦ୍ରଯବ, ଭାଇଗ୍ଲଇ, ଲୋଧ୍ର, ଅକାଳ-ଭାଣ୍ଡ ମୂଳ, କଟୁକୀ ଏମାନଙ୍କ ପାଚନରେ ଶର୍କରା ପକ୍ଷେପ ଦେବ ସେବନ କଲେ ପିତ୍ତଜ୍ୱର ଦୋଷ ପରିପାକ ହୁଏ ।

ଦ୍ରାକ୍ଷାଦି ପାଚନ—ଶତାବରୀ, ଗୁଳୁଚି, ଧନିଆଁ ରକ୍ତଚନ୍ଦନ, ବେଣାମୂଳ, ଘରପୋଡ଼ିଆ, ପଦ୍ମକାଷ୍ଠ ଏମାନଙ୍କ କ୍ୱାଥ ସେବନ କଲେ ପିତ୍ତଜ୍ୱର, ଦାହ, ପିପାସା, ବମନଇଚ୍ଛା, ବମନ ଓ ଭ୍ରାନ୍ତି ନିବାରିତ ହୁଏ ।

ସାରିବାଦ୍ୟ କଷାୟ—ଅନନ୍ତମୂଳର କ୍ୱାଥରେ ଇକ୍ଷୁ ଚିନି ଦେଇ ପାନ କରାଯାଏ ଏବଂ ଯଷ୍ଟିମଧୁ, ମାଳେଡ଼ାଫଳ ଓ ପଦ୍ମକାଠ ଏହି ଦ୍ରବ୍ୟ ମିଳିତ ଦୁଇତୋଳାର କ୍ୱାଥ କରି ଚିନି ସହିତ ପାନ କରିବେ ।

ଗୁଡୂଚ୍ୟାଦି ପାଚନ—ଗୁଡୂଚି ଓ ଅଁଳାର କ୍ୱାଥରେ ମଧୁ ଏବଂ ଚିନି ମିଶ୍ରିତ କରି ସେବନ କଲେ ନାନାବିଧ ପିତ୍ତଜ୍ୱର ଆରୋଗ୍ୟ ହୁଏ ।

ଭୂନିମ୍ବାଦି କ୍ୱାଥ—ଚିରେଇତା, ଅଡୋଷୀ (ଅଡୁସୀ), ଲୋଧ୍ର, ମୁଥା, ଇନ୍ଦ୍ରଯବ, ଗୁଡୂଚି, କୁରୁଚୋପ, ଧନିଆଁ ତେଲଲାଉ ସମାନ ଅଂଶେ ନେଇ କ୍ୱାଥକରି ମଧୁ ସହିତ ସେବନ କରିଲେ ମଳ-ଭେଦ, ଶ୍ୱାସ, କାସ, ରକ୍ତପିତ୍ତ ନିବାରିତ ହୁଏ ।

ଗୁଡୂଚ୍ୟାଦି ପାଚନ—ଗୁଡୂଚି ଚିରେଇତା, କୁରୁଚୋପ, ବେଣା ଚେର, ଅଗୁରୁ, ମୁଥା, ଚନ୍ଦନ, ଅଁଳ କସମିସ, ବାସଙ୍ଗ, ଘର-ପୋଡ଼ଅ ସମାନ ଅଂଶେ ଦୁଇତୋଳା କ୍ୱାଥକରି ମଧୁ ସହିତ ସେବନ କଲେ ନାନାବିଧ ଉପଦ୍ରବ୍ୟ ଯୁକ୍ତ ପିତ୍ତଜ୍ୱର ବିନଷ୍ଟ ହୁଏ ।

ଧନ୍ୟାକ କ୍ୱାଥ—ଧନିଆଁର ବାସି କ୍ୱାଥ ପ୍ରାତଃକାଳରେ ଇକ୍ଷୁ ଚିନି ସହ ସେବନ କଲେ ଦାହ ଓ ପୈତ୍ତିକ ଜ୍ୱର ଭଲହୁଏ ।

ମୃଦ୍ୱୀକାଦି କଷାୟ—କସମିସ, ଯଷ୍ଟିମଧୁ, ନିମ୍ବଛେଲି ଓ କଟୁକୀ ମିଳିତ ଦୁଇତୋଳା କ୍ୱାଥ କରି ଶିଶିରେ ରଖି ପାନ କଲେ ନାନା ପୈତ୍ତିକ ଜ୍ୱର ନଷ୍ଟ ହୁଏ ।

ବଣ୍ୟାଦିପାଚନ—ଶୁଣ୍ଠୀ, କୁରୁଚୋପ, ଖଡପାପଡ଼ା (ଘରପୋଡ଼ଅ) ବେଣାଚେର, ମୁଥା, ରକ୍ତଚନ୍ଦନ ଏମାନଙ୍କ କ୍ୱାଥ ପାନ କଲେ ପିତ୍ତଜ୍ୱର, ବାନ୍ତି, ଦାହ, ପିପାସା ନିବାରିତ ହୁଏ ।

ଦୁରାଲଭାଦି ପାଚନ—ଦୁରାଲଭା, ବାସଙ୍ଗଛେଲି, ଘରପୋଡ଼ଅ, କଟୁକୀ, ପ୍ରିୟଙ୍ଗୁ, ଚିରେଇତା ଏମାନଙ୍କ କ୍ୱାଥରେ ଚିନି ପକ୍ଷେପ ଦେଇ ସେବନ କଲେ ଶୀଘ୍ର ପିତ୍ତଜ୍ୱର ଆରୋଗ୍ୟ ହୁଏ ।

ଅମୃତାଦ୍ୟ ପାଚନ—ଗୁଡ଼ୁଚି, ଘଇପୋଡ଼ଅ, ଅଁଳା, ସୁନାସ୍ତି ଫଳ ଶସ, ଗମ୍ଭାରି, ଦ୍ରାକ୍ଷା, ଘଇପୋଡ଼ଅ,* କଣ୍ଟକାରୀ,ହରିଡ଼ା, ସୁନାସ୍ତି ଫଳର ଶସ * ଓ ମୁଥା, ଏମାନଙ୍କ କ୍ୱାଥରେ ଗୁଡ଼ ପରକ୍ଷେପ ଦେଇ ସେବନ କଲେ ପିପାସା, ଭ୍ରମଦାହଯୁକ୍ତ ପିତ୍ତଜ୍ୱର ଶୀଘ୍ର ଭଲ ହୁଏ ।

ଦ୍ରାକ୍ଷାଦ୍ୟ ପାଚନ—ଦ୍ରାକ୍ଷା, ରକ୍ତଚନ୍ଦନ, ପଦ୍ମମୂଳ, ମୁଥା କଟୁକି ଗୁଡ଼ୁଚି, ଅଁଳା, କ୍ଷୁଦ୍ରବେଲ, ଦେବଦାରୁ, ଲୋଧ୍ର, ଇନ୍ଦ୍ରଯବ, ଘଇପୋଡ଼ଅ, ଡାଳିମ୍ବ ଛେଲି, ଗବମୂଳ, ପ୍ରିୟଙ୍ଗୁ, ଦୁରାଳଭା, ବାସଙ୍ଗ-ଛେଲି, ଯଷ୍ଟିମଧୁ, ପଟୋଳପତ୍ର, ଶତାବରୀ, ଧନିଆ ଏମାନଙ୍କ କ୍ୱାଥ ପାନ କଲେ ପିତ୍ତଜ୍ୱର, ତୃଷା, ଦାହ, ପ୍ରଳାପ, ରକ୍ତପିତ୍ତ, ମୂର୍ଚ୍ଛା, ବମି ଶୂଳ ଅରୁଚି, ଶ୍ୱାସ, କାସ ପ୍ରଭୃତି ନାନାପ୍ରକାର ପୀଡ଼ା ଭଲ ହୁଏ ।

—(*)—

## ଶ୍ଳେଷ୍ମିକ କଫଜ୍ୱର ପାଚନ

ପିପ୍ପଳ୍ୟାଦ୍ୟ ପାଚନ—ପିପ୍ପଳି ପିପ୍ପଳୀମୂଳ, ଗୁଇଁଚୋ, ଶତାବରୀ ଶୁଣ୍ଠି, ମରିଚ, ଗ୍ରନ୍ଥିପର୍ଣ୍ଣ, ଜୁଆଣି ଇନ୍ଦ୍ରଯବ, ଅପାମାର୍ଗ ମୂଳ, ରେଣୁକ,ଜୀର,ଭେଙ୍ଗାଭେଜ; ମହାନିମ୍ବଫଳ, ହିଙ୍ଗୁ କଟୁକୀ, ସୋରିଷ, ବିଡ଼ଙ୍ଗ, ଅଭୁସୀ, ମୂର୍ଗାମୂଳ ଏହି ପଦାର୍ଥମାନଙ୍କର କ୍ୱାଥ ଯଥା ନିୟମରେ ପ୍ରସ୍ତୁତ କରି ସେବନ କଲେ ଶ୍ଳେଷ୍ମାଯୁକ୍ତ ଜ୍ୱର ଓ ଅରୁଚି ଗୁଳ୍ମ ଶୂଳ ପ୍ରଭୃତି ରୋଗମାନ ଉପଶମ ହୁଏ ଓ ଏହା ଅଗ୍ନିବର୍ଦ୍ଧକ ଏବଂ କଫଯୁକ୍ତ ଜ୍ୱର ନାଶକ ।

ନିମ୍ବାଦ୍ୟ ପାଚନ—ନିମ୍ବଛେଲି, ଶୁଣ୍ଠି, ଗୁଡ଼ୁଚି, ଦେବଦାରୁ ଗନ୍ଧଶୁଣ୍ଠି, ଶତାବରୀ, କୁଡ଼, ଗଜପିପ୍ପଳି, ବଣ୍ଟାକାରୀ ଏମାନଙ୍କ କ୍ୱାଥ ପାନ କଲେ କଫଜ୍ୱର ପ୍ରଶମିତ ହୁଏ ।

---

*ଏ ଚିହ୍ନିତ ଦ୍ରବ୍ୟଗୁଡ଼ିକ ଗୋଟିଏ ତାଲିକାରେ ଯେତେଥର ଲେଖା ହୋଇଥିବ, ସେତେଥର ସମାନ ଭାଗ ଗ୍ରହଣ କରିବ ।

କଟୁକାଦ ପାଚନ—କଟୁକୀ, ଶତାମୂଳ, ନିମ୍ବଛେଲି, ହଳଦୀ, ଅତୁସୀ, ବଚ, କୁଡ଼, ଇନ୍ଦ୍ରଯବ, ମୂର୍ଗାମୂଳ ଓ ପଟୋଳପତ୍ର ଏମାନଙ୍କ କ୍ୱାଥରେ ମରିଚ ଚୂର୍ଣ୍ଣ ଓ ମଧୁ ପକ୍ଷେପ କରି ପାନ କଲେ ଶ୍ଳୈଷ୍ମିକ ଜ୍ୱର ନାଶ ହୁଏ ।

ସିନ୍ଧୁବାରାଦ ପାଚନ—ବେଗୁନିଆଁ ପତ୍ର ଶୁଖାଇ ଯଥା-ନିୟମରେ କ୍ୱାଥ ପ୍ରସ୍ତୁତ କରି ପିପ୍ପଳି ଚୂର୍ଣ୍ଣ ପକ୍ଷେପ ଦେଇ ସେବନ କଲେ ଜଙ୍ଘର ଦୁର୍ବଳତା ଶ୍ରବଣଶକ୍ତି ହ୍ରାସରେ ଉପକାର ହୁଏ ।

ସପ୍ତଚ୍ଛଦାଦ ପାଚନ—ଛତିଅନା ଛେଲି, ଗୁଣ୍ଡିଚ, ନିମ୍ବଛେଲି, ଗବ ଛେଲି ଏହି ଦ୍ରବ୍ୟମାନ କ୍ୱାଥ କରି ସେବନ କଲେ କଫଜ୍ୱର ପ୍ରଶମିତ ହୁଏ ।

ମହାଗୃଦ ପାଚନ—ମରିଚ, ପିପଳାମୂଳ, ଶୁଣ୍ଠି କଳାଜୀରା, ପିପଳି, ଶତାମୂଳ, ଚାଫଡ଼, କୁଡ଼, ମୁଥା, ବଚ, ହରଡ଼ା, ଅଙ୍କରାନ୍ତି, ଜଟାମାଂସୀ, କଳକାଣ୍ଟୁଣୀ, ପୁଅଣି, ନିମ୍ବଛେଲି, ଏମାନଙ୍କ କ୍ୱାଥ ପାନ କଲେ ଉପଦ୍ରବ ସଂଯୁକ୍ତ କଫଜ୍ୱର ନାଶ ହୁଏ ।

କଟୁତିକ୍ତାଦ କଷାୟ—ଶୁଣ୍ଠି, ପିପ୍ପଳି, ମରିଚ, ନାଗେଶ୍ୱର-ଫୁଲ, ହଳଦୀ, କଟୁକୀ ଓ ଇନ୍ଦ୍ରଯବ ଏହି ଦ୍ରବ୍ୟମାନଙ୍କର କ୍ୱାଥ ପିଇଲେ କଫଜ୍ୱର ନଷ୍ଟ ହୁଏ ।

ବାସାଦ କଷାୟ—ବାସଙ୍ଗ ଛେଲି, ଅଙ୍କରାନ୍ତି ଓ ଗୁଡ଼ୁଚି ଏହି ଦ୍ରବ୍ୟମାନଙ୍କର କ୍ୱାଥ ମହୁ ସଙ୍ଗରେ ପିଇବାକୁ ହେବ ।

ଅମଳତ୍ୟାଦ ପାଚନ—ଅଁଳା, ହରଡ଼ା, ପିପଳି ଓ ରକ୍ତ-ଚିତାମୂଳ, ଏହାକୁ ପୂର୍ବୋକ୍ତ ପ୍ରକାରେ କ୍ୱାଥ କରି ସେବନ କଲେ ସର୍ବଜର କଫ ରୋଗ ପ୍ରଶମନ, ବିରେଚନ, ଅଗ୍ନି ଦୀପକ ଏବଂ ଆମ ଦୋଷର ପରିପାକ ହୁଏ ।

ତ୍ରିଫଳାଦ ପାଚନ—ହରଡ଼ା, ବାହାଡ଼ା, ଅଁଳା, ପଟୋଳ, ବାସଙ୍ଗ, ଗୁଡ଼ୁଚି, କଟୁକୀ ଓ ବଚ ଅଥବା ଦଶମୂଳ ଓ ବାସଙ୍ଗ ଏହାର ଯଥାବିଧି କ୍ୱାଥକର ମହୁଦ୍ୱାରା ସେବନ କଲେ ନାନାବିଧ କଫଜ୍ୱର ଭଲ ହୁଏ ।

ମୁସ୍ତାଦ୍ୟ ପାଚନ—ମୁଥା, ଇନ୍ଦ୍ରଯବ, ହରଡ଼ା, ଅଁଳା, ବାହାଡ଼ା କଟୁକୀ ଓ ଫାଲସା ଏ ସମାନ ଅଂଶ କୁଟି ଛେଚି ନେଇ କ୍ୱାଥ ପାନ କଲେ ନାନାବିଧ କଫଜ୍ୱର ନଷ୍ଟ ହୁଏ ।

ପଟୋଲାଦି ପାଚନ—ପଟୋଲ ହରଡ଼ା, ଅଁଳା, ବାହାଡ଼ା, କଟୁକୀ, ଗନ୍ଧଶୁଣ୍ଠୀ, ବାସଙ୍ଗ ଓ ଗୁଳୁଚି ଏହାର କ୍ୱାଥ ସେବନ କଲେ କଫଜ୍ୱର ନଷ୍ଟ ହୁଏ ।

ବ୍ୟାଘ୍ର୍ୟାଦି ପାଚନ—ଅଙ୍କରାନ୍ତି, ବୃହତୀ, ଶୁଣ୍ଠି, କୁଡ ଓ ପଟୋଲ ଏହି ସକଳର କ୍ୱାଥ କରି ସେବନ କଲେ ନାନାବିଧ କଫଜ୍ୱର ଭଲ ହୁଏ ।

ସାରିବାଦି ପାଚନ—ଅନନ୍ତମୂଳ, ଅରୁସୀ, କୁଡ, ଗୁଗୁଳ, ଦୁରାଲଭା ଓ ମୁଥା, ଏ ସକଳର କ୍ୱାଥ କରି ସେବନ କଲେ ନାନାବିଧ କଫଜ୍ୱର ଭଲ ହୁଏ ।

ଅଭୟାଦି ପାଚନ—ହରଡ଼ା, ଅଁଳା, ପିପଳି ଓ ରକ୍ତଚିତା ମୂଳ, ଏଥିରୁ ଯଥାବିଧି କ୍ୱାଥ କରି ସେବନ କଲେ କଫଜ୍ୱର ଭଲ ହୁଏ ।

—*—

## ବାତ ପୈତ୍ତିକ ଜ୍ୱର ପାଚନ

ବିଶ୍ୱାଦି ପାଚନ—ଶୁଣ୍ଠୀ, ଗୁଳୁଚି, ମୁଥା, ଚିରାଇତା, ଶାଳପର୍ଣ୍ଣୀ ପୃଷ୍ଣିପର୍ଣ୍ଣୀ, ବୃହତୀ, ଅଙ୍କରାନ୍ତି, ଗୋକ୍ଷୁର ଏମାନଙ୍କ ପାଚନରେ ବାତ ପୈତ୍ତିକଜ୍ୱର ପ୍ରଶମିତ ହୁଏ ।

ନିଦିଗ୍ଧିକାଦି ପାଚନ—ଅଙ୍କରାନ୍ତି, ବାଉଁଅଁଳା, ରାସ୍ନା, ଯଷ୍ଟି-ମଧୂମ୍ବିକ, ଗୁଳୁଚି, ମଧୁର ଏମାନଙ୍କ କ୍ୱାଥ ପାନ କଲେ ବାତ ପିତ୍ତ ଜ୍ୱର ଶାନ୍ତ ହୁଏ ।

ତ୍ରିଫଳାଦି ପାଚନ—ହରଡ଼ା, ବାହାଡ଼ା, ଅଁଳା, ଶିମୂଳିମୂଳ-ଛେଲି, ରାସ୍ନା, ସୁନାରିଫଳର ଅଠା, ବାସଙ୍ଗଛେଲି ଏମାନଙ୍କ କ୍ୱାଥ ପାନକଲେ ଶୀଘ୍ର ବାତପିତ୍ତ ଜ୍ୱର ନାଶ ହୁଏ ।

କିରାତାଦ ପାଚନ—ଚିରାଇତା, ଅଁଳା, ଗନ୍ଧଶୁଣ୍ଠୀ, ଦ୍ରାକ୍ଷା, ପିପଳୀ, ଶୁଣ୍ଠୀ ଗୁଳୁଚି ଏ ମାନଙ୍କ କ୍ୱାଥ ଶୀତଳକରି ଗୁଡ଼ ପକ୍ଷେପ କରି ପାନ କଲେ ବାତପିତ୍ତଜ୍ୱର ଭଲ ହୁଏ ।

ମୁସ୍ତାଦ ପାଚନ—ମୁଥା, ଘରପୋଡ଼ଅ, ନୀଳୋତ୍ପଳ, ଚିରାଇତା, ବେଣାମୂଳ, ରକ୍ତଚନ୍ଦନ ଏମାନଙ୍କ କ୍ୱାଥ ଚିନି ପକ୍ଷେପ କରି ସେବନ କଲେ ବାତପିତ୍ତ ଜ୍ୱର ନିବାରଣ ହୁଏ । ଏହା ପ୍ରତ୍ୟକ୍ଷ ଫଳଦାୟକ ।

ଅରଗ୍ୱଧାଦ ପାଚନ—ସୁନାରିଫଳଅଠା, ମୁଥା,ଯଷ୍ଟିମଧୁ,ବେଣା-ଚେର,ହରିଡ଼ା,ହଳଦୀ,ଦାରୁହଳଦୀ,ପଟୋଳପତ୍ର,ନିମ୍ବଛେଲି, ଗୁଳୁଚି, କଟୁକୀ ଏମାନଙ୍କ କ୍ୱାଥ ସେବନ କଲେ ବାତପିତ୍ତ ଜ୍ୱର ବିନଷ୍ଟ ହୁଏ ।

ମଧୁକାଦ ପାଚନ—ଯଷ୍ଟିମଧୁ, ଚେମିଣ୍ଡନଇ ମୂଳ, ଶୁଆଁନଇ ମୂଳ, ଦ୍ରାକ୍ଷା, ମହୁଲ,ରକ୍ତଚନ୍ଦନ,ନୀଳୋତ୍ପଳ, ଗମ୍ଭାରିଫଳ, ପଦ୍ମକାଷ୍ଠ ଲୋଧ, ହରିଡ଼ା, ଅଁଳା, ବାହାଡ଼ା, ପଦ୍ମକେଶର, ଫାରସା ଛୋଲି, ବେଣାଚେର ଏ ସମସ୍ତଙ୍କୁ ଏକତ୍ରରେ କ୍ୱାଥ କରି ରଖିବ । ପ୍ରାତଃ-କାଳରେ ଏହି ଜଳରେ ମହୁ ଚିନି ମିଶ୍ରିତ କରି ପାନକଲେ ଉପଦ୍ରବ ସହିତ ବାତପିତ୍ତଜ୍ୱର ସତ୍ୱର ଶାନ୍ତ ହୁଏ ।

ପଞ୍ଚଭଦ୍ରାଦ କଷାୟ—ଗୁଡ଼ୁଚି, ଘରପୋଡ଼ଅ, ମୁଥା, ଚିରାଇତା ଓ ଶୁଣ୍ଠୀ ଏହି ପାଞ୍ଚଟି ଦ୍ରବ୍ୟର କ୍ୱାଥ ପାନକଲେ ବାତପିତ୍ତ ଜ୍ୱର ଭଲହୁଏ ।

ତ୍ରିଫଳାଦ କଷାୟ—ତ୍ରିଫଳା, ଶାସଙ୍ଗଛେଲି, ହରଡ଼ା, ବାହାଡ଼ା, ଅଁଳା ଓ ସୁନାରିଫଳ ଅଠା ଏହି ସମସ୍ତ ଦ୍ରବ୍ୟର କ୍ୱାଥ ପିଇଲେ କୋଷ୍ଠ ଶୁଦ୍ଧ ହୁଏ, ବାତପିତ୍ତ ଜ୍ୱର ଶାନ୍ତ ହୁଏ ।

ଗୁଡ଼ୁଚ୍ୟାଦ ପାଚନ—ଗୁଡ଼ୁଚି, ନିମ୍ବଛେଲି, ଧନିଆଁ,ପଦ୍ମକାଠ ଓ ରକ୍ତଚନ୍ଦନ ଏ ସବୁର କ୍ୱାଥ ସେବନ କଲେ ଅଗ୍ନିଦୀପ୍ତି ହୁଏ ଓ କଫଜ୍ୱର ଅନ୍ୟାନ୍ୟ ସକଳପ୍ରକାର ଜ୍ୱର, ଅରୁଚି, ପିପାସା ଓ ଦାହ ନିବାରିତ ହୁଏ ।

ଘନଚନ୍ଦନାଦ ପାଚନ—ମୁଥା, ରକ୍ତଚନ୍ଦନ, ଘରପୋଡ଼ୁଅ, କଟୁକୀ, ବେଣାଚେର, ପଟୋଳପତ୍ର ଓ କୁଚୁଟବେଲ ଏହାର କ୍ୱାଥରେ ଚିନି ପ୍ରକ୍ଷେପ ଦେଇ ପାନକଲେ ପିତ୍ତ, ତୃଷ୍ଣା, ଅରୁଚି ଓ ଦାହ ପ୍ରଭୃତି ଅପସାରିତ ହୁଏ ।

ଅମୃତାଦି ପାଚନ—ଗୁଡ଼ୁଚି, ମୁଥା, ବାସଙ୍ଗଛେଲି, ଘରପୋଡ଼ୁଅ, ଶୁଣ୍ଠି ଓ କୁଚୁଟବେଲ ସମାନ ଅଂଶେ ମିଳିତ ତୋଳାର କ୍ୱାଥ କରି ସେବନ କଲେ ନାନାବିଧ ବାତପିତ୍ତ ଜ୍ୱର ନିବାରିତ ହୁଏ ।

ପାଚନ—ଶୁଣ୍ଠି, ଲବଙ୍ଗ, ଗୁଡ଼ୁଚି, ଦ୍ରାକ୍ଷା, କଟୁକୀ, ଅଁଳା, ଚିରେଇତା ଏହାର କ୍ୱାଥ କରି କନ୍ଦ ସରଖ ଦେଇ ଖାଇଲେ ଜ୍ୱର ଭଲ ହୁଏ ।

—:o:—

## ବାତ ଶ୍ଳେଷ୍ମ ଜ୍ୱରର ପାଚନ

ପଟୋଳାଦି ପାଚନ—ପଟୋଳପତ୍ର, ରକ୍ତଚନ୍ଦନ, ମୂର୍ଚ୍ଚାମୂଳ, କଟୁକୀ, ଅନ୍ତାନବନ୍ଧମୂଳ, ଗୁଳୁଚି ଏମାନଙ୍କ କ୍ୱାଥ ସେବନ କଲେ ପିତ୍ତ ଶ୍ଳେଷ୍ମା ଜ୍ୱର ଶାନ୍ତ ହୁଏ ।

ମତାନ୍ତର—ପଟୋଳାଦି ପାଚନ—ପଟୋଳପତ୍ର, ଯବ, ଧନିଆଁ, ମୁଥା, ଅଁଳା, ରକ୍ତଚନ୍ଦନ ଏମାନଙ୍କ କ୍ୱାଥ ପାନକଲେ ପିତ୍ତ ଶ୍ଳେଷ୍ମ ଜ୍ୱର ନାଶ ହୁଏ ।

ଗୁଳୁଚ୍ୟାଦି ପାଚନ—ଗୁଳୁଚି, ନିମ୍ବପତ୍ର, ଧନିଆଁ, ରକ୍ତଚନ୍ଦନ, କଟୁକୀ ଓ ଇନ୍ଦ୍ରଯବ ଏମାନଙ୍କ କ୍ୱାଥ ପାନକଲେ ପିତ୍ତଶ୍ଳେଷ୍ମ ଜ୍ୱର ବିନାଶ ହୁଏ ।

ଅମୃତାଷ୍ଟକ—ଗୁଳୁଚି, ଇନ୍ଦ୍ରଯବ, ନିମ୍ବଛେଲି, ପଟୋଳ ପତ୍ର, କଟୁକୀ, ଶୁଣ୍ଠି, ରକ୍ତଚନ୍ଦନ, ମୁଥା ଏମାନଙ୍କ କ୍ୱାଥରେ ପିପଳୀ ଚୂର୍ଣ୍ଣ ପ୍ରକ୍ଷେପ କରି ପାନକଲେ ପିତ୍ତଶ୍ଳେଷ୍ମଜ୍ୱର, ବମନଭାବ, ଅରୁଚି, ତୃଷା, ଦାହ ନିବାରିତ ହୁଏ ।

ନାଗରାଦ ପାଚନ—ଶୁଣ୍ଠୀ, ବେଣାଚେର, ବେଲଛେଲ, ମୁଥା, ଧନିଆଁ ମୋଚରସ ଓ କୁରୁଚବଲ ଯଥାବିଧି କ୍ୱାଥକରି ସେବନ କଲେ ଜ୍ୱର ଭଲ ହୁଏ ।

ଏଳା ପଟୋଳାଦ କ୍ୱାଥ—ଅଳାଇଚ, ପଟୋଳ, ହରଡ଼ା ବାହାଡ଼ା, ଅଁଳା, ଯଷ୍ଟିମଧୁ ବାସଙ୍ଗ ମୂଳ ଏହାର କ୍ୱାଥ କରି ମହୁ ସହିତ ସେବନ କଲେ ପିତ୍ତ ଶ୍ଳୈଷ୍ମିକ ଜ୍ୱର ନାଶ ହୁଏ ।

ଭଦ୍ର ମୁସ୍ତାଦ ପାଚନ—ମୁଥା, ଶୁଣ୍ଠୀ, ଗୁଳୁଚି, ଅଁଳା, ଅଡା ନବନ୍ଧ, ବେଣାଚେର ଓ କୁରୁଚବଲ୍ଲ ଏହାର କାଥ ସେବନ କଲେ ପିତ୍ତଶ୍ଳୈଷ୍ମିକ ଜ୍ୱର ଭଲ ହୁଏ ।

ଧାନ୍ୟ ପଟୋଳ ପାଚନ—ଧନିଆଁ ଓ ପଟୋଳ ଯଥାରୂପେ କ୍ୱାଥ କରି ସେବନ କଲେ କ୍ଷୁଧା ବୃଦ୍ଧି ହୁଏ, କଫ ନଷ୍ଟ କରେ, ବାୟୁ ଓ ପିତ୍ତ ରସଂଭଲ ଓ ଆମରସର ପରିପାକ ଓ ଦାନ୍ତ ପରିଷ୍କାର କରେ, ଜ୍ୱର ନାଶ କରେ ।

ମୁଥାଦ ପାଚନ—ମୁଥା, ଶୁଣ୍ଠୀ କଟୁକୀ, ଅଙ୍କସନ୍ତ୍ର, ପିପଳମୂଳ, ଇନ୍ଦ୍ରଯବ, ପୁନାସ୍ତ୍ରି ଛେଲି, ହରିଡ଼ା, ଇଟା ବେଁକୋଳି, ଏହା କ୍ୱାଥ କରି ପିପ୍ପଳୀ ପରଷ ଦେଇ ସେବନ କଲେ ଜ୍ୱର ଭଲ ହୁଏ ।

ପଞ୍ଚତିକ୍ତ—ଅଙ୍କସନ୍ତ୍ର,ଗୁଳୁଚି, ଶୁଣ୍ଠୀ, କୁଡ, ଚିରାଇତା ଏହି ପଞ୍ଚତିକ୍ତ କଷାୟ ସେବନ କଲେ ଅଷ୍ଟବିଧ ଜ୍ୱର ନିବାରିତ ହୁଏ ।

କଣ୍ଟକାର୍ଯ୍ୟାଦ ପାଚନ—ଅଙ୍କସନ୍ତ୍ର, ଗୁଳୁଚି, ଭେଙ୍ଗାଭେଙ୍ଗି, ଶୁଣ୍ଠୀ, ଇନ୍ଦ୍ରଯବ, ଦୁରାଳଭା, ଚିରେଇତା, ରକ୍ତଚନ୍ଦନ, ମୁଥା, କଟୁକୀ, ପଟୋଳପତ୍ର ଏମାନଙ୍କ କ୍ୱାଥ ପାନ କଲେ ପିତ୍ତଶ୍ଳେଷ୍ମ ଜ୍ୱର, ଦାହ, ପିପାସା, ଅରୁଚି, ବମି, କାଶ ଓ ପାର୍ଶ୍ୱଶୂଳ ନିବାରିତ ହୁଏ ।

ଭାର୍ଗ୍ୟାଦ ପାଚନ—ବ୍ରାହ୍ମଣଙ୍କାଟିଆ ମୂଳ, ବଚ, ଷଡପାଁପଡ଼ା, ଧନିଆଁ, ହିଙ୍ଗୁ, ହରଡ଼ା, ମୁଥା, ଗମ୍ଭାରିଛେଲି, ଶୁଣ୍ଠୀ କ୍ୱାଥରେ ମଧୁ ଯୋଗ କରି ପାନ କଲେ ପିତ୍ତଶ୍ଳେଷ୍ମଜ୍ୱର ଶାନ୍ତ ହୁଏ ।

## ବାତଶ୍ଳେଷ୍ମା ଜ୍ୱରରେ

ମୁସ୍ତାଦ୍ୟ ପାଚନ—ମୁଥା, ଶୁଣ୍ଠୀ, ଛତେଇଚ୍ଛା ଏହାର କ୍ୱାଥ ସେବନ କଲେ ବାତଶ୍ଳେଷ୍ମାଜ୍ୱର ନିବାରଣ ହୁଏ।

ପଞ୍ଚକୋଲ ପାଚନ—ପିପଳି ପିପ୍ପଳିମୂଳ, ଚୁଇଁକାଠ, ଚିତାମୂଳ ଓ ଶୁଣ୍ଠୀ ଏମାନଙ୍କ କ୍ୱାଥ ସେବନ କଲେ ବାତ ଶ୍ଳେଷ୍ମାଜ୍ୱର ଶାନ୍ତହୋଇ ଅଗ୍ନି ପ୍ରଦୀପ୍ତ ହୁଏ।

ଆରଗ୍ୱଧାଦି ପାଚନ—ସୁନାରିଫଳ, ପିପ୍ପଳୀମୂଳ, ମୁଥା କଟୁକୀ; ହରିଡ଼ା ଏମାନଙ୍କ କ୍ୱାଥ ସେବନ କଲେ ଆମଦୋଷ ସଂଯୁକ୍ତ ଏବଂ ଶୂଳବେଦନା ବିଶିଷ୍ଟ ବାତ ଶ୍ଳେଷ୍ମାଜ୍ୱର ନିବାରିତ ହୁଏ।

କ୍ଷୁଦ୍ରାଦି ପାଚନ—ଅଙ୍କରାନ୍ତି, ଗୁଳୁଚି, ଶୁଣ୍ଠୀ, କୁଡ଼ ଏମାନଙ୍କର କ୍ୱାଥ ପାନ କଲେ ଶ୍ୱାସ, କାଶ, ଅରୁଚି, ପାର୍ଶ୍ୱଶୂଳ ବିଶିଷ୍ଟ ବାତ-ଶ୍ଳେଷ୍ମଜ୍ୱର ଏବଂ ତ୍ରିଦୋଷଜ୍ୱର ଶାନ୍ତ ହୁଏ।

ଦଶମୂଳ ପାଚନ—ବେଲ, ଫଣଫଣା, ଗମ୍ଭାରି, ପାଟେଲୀ, ଅଗି-ବଥୁ, ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣି ବୃହତୀ (ଲଟାବେଙ୍କୋଳି), ଅଙ୍କରାନ୍ତି ଓ ଗୋକ୍ଷୁର ଏହି ସମସ୍ତଙ୍କୁ ଯଥାସମ୍ଭବ ସମାନ ଭାବରେ ମୂଳ ଓ ଛେଲିର କ୍ୱାଥ ପିପଳୀ ଚୂର୍ଣ୍ଣ ଓ ମହୁ ସହିତ ପିଅଇଲେ ବହୁଦୋଷଯୁକ୍ତ ବାତ ଶ୍ଳେଷ୍ମାଜ୍ୱର ବନଷ୍ଟ ହୁଏ।

ନିମ୍ବାଦି କଷାୟ—ନିମ୍ବଛେଲି, ଗୁଡ଼ୁଚି, ଶୁଣ୍ଠୀ ଦେବଦାରୁ, ଛାଫଡ଼, କଟୁକୀ ଓ ବଚ ଏ ସମସ୍ତ ଦ୍ରବ୍ୟର କ୍ୱାଟରେ କଥିତ ମହୁ ମିଶାଇ ପିଇବାକୁ ଦେବ।

ମୁସ୍ତାଦ୍ୟ ପାଚନ—ମୁଥା, ଗୁଡ଼ୁଚି, ଶୁଣ୍ଠୀ, ବାସଙ୍ଗ, କୁରୁଟବେଲ, ଘରପୋଡ଼ିଅ, ହରିଡ଼ା ଅଙ୍କରାନ୍ତି ଓ ଦୁଟଲଭା ଏହାର କ୍ୱାଥ କରି ସେବନ କଲେ ବାତଶ୍ଳେଷ୍ମାଜ୍ୱର ଭଲ ହୁଏ।

ପାଚନ—ଧନିଆଁ, ମୁଥା, ନିମ୍ବପତ୍ର, ବେହିଁକୁଡ଼, ପଟୋଳ ପତ୍ର, ତ୍ରିଫଳା, ଏ ସମସ୍ତର କ୍ୱାଥ କରି ପିପଳୀ ଚୂର୍ଣ୍ଣର ପରଖଦେଇ ଖାଇଲେ ଜ୍ୱର ଭଲହୁଏ।

ଦାର୍ବ୍ୟାଦ ପାଚନ—ଦେବଦାରୁ, ଘରପୋଡ଼ଅ, ବ୍ରାହ୍ମଣେଇଂଅ, ମୁଥା, ବଚ, ଧନିଅାଁ ଭାଙ୍ଗଡ଼, ହରଡ଼ା, ଶୁଣ୍ଠି ଓ ଗିଲ ଏମାନଙ୍କ କ୍ୱାଥରେ କଞ୍ଚିତ ଭାଜିତ ହିଙ୍ଗୁ ଓ ମହୁ ପ୍ରକ୍ଷେପ କରି ପାନ କଲେ ଶ୍ଳେଷ୍ମାଜ୍ୱର ଓ ଶ୍ୱାସ ପ୍ରଶମିତ ହୁଏ ।

---

## ତ୍ରିଦୋଷ ବା ସନ୍ନିପାତ ଜ୍ୱରର ପାଚନ

କଣ୍ଟକାର୍ଯ୍ୟାଦ ପାଚନ—ଅଙ୍କଗନ୍ଧ, ଡେଙ୍ଗାଭେଜି, ଶୁଣ୍ଠୀ, ଧନିଅାଁ ଦେବଦାରୁ, ଏଥିରେ ପିପଳୀ ପ୍ରକ୍ଷେପ ଦେଇ ପାନ କଲେ ସର୍ବ ପ୍ରକାର ଜ୍ୱର ଶାନ୍ତ ହୁଏ ।

ପଞ୍ଚମୂଳ କଟ୍ୱାଦ ପାଚନ—ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ଡେଙ୍ଗା-ଭେଜି ଅଙ୍କଗନ୍ଧ, ଗୋକ୍ଷୁର, ଚରେଇତା, ଶୁଣ୍ଠୀ, ମୁଥା, ଗୁଳୁଚ, ଏମାନଙ୍କ କ୍ୱାଥ ତ୍ରିଦୋଷଜ ସନ୍ନିପାତରେ ମହୁ ସହିତ, କଫାଧିକ ସନ୍ନି-ପାତରେ ପିପଳୀ ଚୂର୍ଣ୍ଣ ସହିତ ପାନ କଲେ ବିଶେଷ ଉପକାର ହୁଏ ।

ଦଶମୂଳ ପାଚନ—ବେଲଛେଲି, ଫଣଫଣା, ଗମ୍ଭାରି, ପାଟେଲୀ, ଅଗ୍ନିବଥୁ ଏହି ଗଛର ମୂଳ ଛେଲିକୁ ବୃହତ୍ ପଞ୍ଚମୂଳ କହନ୍ତି ।

ବୃହତ୍ ପଞ୍ଚମୂଳର କ୍ୱାଥ ଅଗ୍ନି ସନ୍ଦୀପକ ଓ ବାତଶ୍ଳେଷ୍ମାନାଶକ ।

ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ନବାଙ୍କୁଡ଼, ଅଙ୍କଗନ୍ଧ, ଗୋକ୍ଷୁର ଏହି ପାଞ୍ଚୋଟିକୁ ଲଘୁ ପଞ୍ଚମୂଳ କହନ୍ତି, ଏହା ବାତ ପିତ୍ତ ନାଶକ ଓ ବଲକାରକ । ଏହି ଉଭୟ ପଞ୍ଚମୂଳ ମିଳିତ ହେଲେ ଦଶମୂଳ କୁହା-ଯାଏ । ଦଶମୂଳର କ୍ୱାଥରେ ଶୁଣ୍ଠୀଚୂର୍ଣ୍ଣ ପ୍ରକ୍ଷେପ ଦେଇ ପାନ କଲେ ସନ୍ନିପାତଜ୍ୱର, ଶ୍ୱାସ, କାଶ ଓ ହୃଦୟର ବେଦନା ନିବାରିତ ହୁଏ ।

ନାଗରାଦ ପାଚନ—ଶୁଣ୍ଠୀ, ଧନିଅାଁ, ଡେଙ୍ଗାଭେଜି, ପଦ୍ମକାଠ ରକ୍ତଚନ୍ଦନ, ପଟୋଳପତ୍ର, ନିମ୍ବଛେଲି, ତ୍ରିଫଳା, ଯାଷ୍ଟିମଧୁ, ଭାଉ-ଅାଁଳା, କଟୁକୀ, ମୁଥା, ଗଜପିପଳି, ସୁନାରିଫଳର ମଞ୍ଜା, ଚରେଇତା ଗୁଳୁଚ, ଦଶମୂଳରୁ ଦଶଖଣ୍ଡ, ଅଙ୍କଗନ୍ଧ ଏମାନଙ୍କ ପାଚନରେ ଶନି

ପ୍ରକ୍ଷେପ କରି ପାନ କଲେ ତ୍ରିଦୋଷସଂଯୁକ୍ତ ସନ୍ନିପାତ ଜ୍ୱର ଏମନ୍ତ କି ଅସନ୍ନ ମୃତ୍ୟୁରୁ ରୋଗୀ ରକ୍ଷାପାଏ ।

ଅଷ୍ଟାଦଶାଙ୍ଗ ପାଚନ—ଦଶମୂଳରୁ ଦଶଗୋଟି, ଚନ୍ଦ୍ରଶୁଣ୍ଠୀ, କକଡ଼ାଶୃଙ୍ଗୀ, କୁଡ଼, ଦୁରାଳଭା, ବ୍ରାହ୍ମଣଯଷ୍ଟିଆ, ଇନ୍ଦ୍ରଯବ, ପଟୋଳ ପତ୍ର, କଟୁକୀ ଏହି ଅଷ୍ଟାଦଶାଙ୍ଗ ପାଚନ ପାନକଲେ ସନ୍ନିପାତ ଜ୍ୱର କାଶ, ହୃଦ୍‌ରୋଗ, ପାର୍ଶ୍ୱଶୂଳ, ଶ୍ୱାସ, ହିକ୍କା, ବାନ୍ତି ନିବାରଣ ହୁଏ । ବୃଦ୍ଧ ବୈଦ୍ୟମାନେ ଏହି ଅଷ୍ଟାଦଶାଙ୍ଗ ପାଚନକୁ ବାତଶ୍ଳେଷ୍ମିକ ସନ୍ନିପାତ ଜ୍ୱରରେ ବ୍ୟବସ୍ଥା କରନ୍ତି ।

ଦ୍ୱାବିଂଶାଙ୍ଗ ପାଚନ—ବ୍ରାହ୍ମଣଯଷ୍ଟିଆ, ଚିରେଇତା, ମୁଥା, କଟୁକୀ, [illegible], ଶୁଣ୍ଠୀ, ପିପଳ ମରିଚ, ବାସଙ୍ଗ ଗୋରକ୍ଷକାକୁଡ଼ି, ରାସ୍ନା ଶ୍ୟାମ [illegible], ଶୁଖିଲା କଣ୍ଟିକାରି, ଦେବଦାରୁ, ହଳଦୀ, ପାଟଲଛେଲି, ଗବ ମୂଳ, ବ୍ରାହ୍ମୀଶାଗ, ଦାରୁହଳଦୀ, ଗୁଳୁଚ, ଅଗସ୍ତିଫୁଲ, ଛତୁଡ଼ି ମୂଳ, କ୍ଷୁଦ୍ର ଟଙ୍କଙ୍କଦୁମ୍ବର, ଅଙ୍କରାନ୍ତି, ଡେଙ୍ଗାଭେଜି, ଇନ୍ଦ୍ରଯବ ତ୍ରିଫଳା, ଶୁଣ୍ଠୀ ଏହି ବାଇଶଦ୍ରବ୍ୟମାନଙ୍କର କ୍ୱାଥପଥ୍ୟାନୁସରେ ସେବନ କଲେ ତେରପ୍ରକାର ସନ୍ନିପାତ ଜ୍ୱର, ଶୂଳ, କାଶ, ହିକ୍କା, ଶ୍ୱାସ, ପେଟଫମ୍ପା, ଜ୍ୱରସ୍ତମ୍ଭ, ଗଳରୋଗ, ଅରୁଚି, ସନ୍ଧିବେଦନା ଏସବୁ ପ୍ରଶମିତ ହୁଏ ।

ବୃହତ୍ କଟ୍‌ଫଳାଦି ପାଚନ—କାଫଡ଼, ମୁଥା, ବଚ, ଅକାନ-ବିନ୍ଧ ମୂଳ, କୁଡ଼, କଳାଜୀରା, ଘରପୋଡ଼ିଅ, କକଡ଼ାଶୃଙ୍ଗୀ, ଇନ୍ଦ୍ରଯବ, ଧନିଆଁ, ଶଠୀ, ଭୃଙ୍ଗରାଜ, ପିପଳି, କଟୁକୀ, ହରିଡ଼ା ବାହାଡ଼ା, ଚିରେଇତା, ବ୍ରାହ୍ମଣଯଷ୍ଟିଆ, ଧଳାଅଁଳୁ ବାଉଅଁଳା, ଦଶମୂଳ, ପିପଳାମୂଳ ଏମାନଙ୍କ କ୍ୱାଥରେ ଅଦାରସ ଓ ହିଙ୍ଗୁ ପକ୍ଷେପ ଦେଇ ପାନକଲେ ନାନାପ୍ରକାର ସନ୍ନିପାତ ଜ୍ୱର ଗଳଗଣ୍ଡ, ଗଣ୍ଡମାଳାଦି ବହୁ ବାଧିରୋଗ ଆରୋଗ୍ୟ ହୁଏ ।

ବିଲ୍ୱାଦି ପାଚନ—ବେଲଚେଲି, ବ୍ରାହ୍ମଣଯଷ୍ଟିଆ, ଯୁଆଣି ରାସ୍ନା, କୁଡ଼, ପିପଳି, ଦଶମୂଳ, ଶୁଣ୍ଠୀ ଏମାନଙ୍କ କ୍ୱାଥ ପାନକଲେ ସନ୍ନିପାତ

ଜ୍ୱରକାନ୍ତ ରୋଗୀର ହୃଦୟ ଶୂଳ, ପାର୍ଶ୍ୱଶୂଳ, ପେଟଫମ୍ପା, ଶ୍ୱାସ, କାଶ, ଅଗ୍ନିମାନ୍ଦ୍ୟ, ତନ୍ଦ୍ରା ପ୍ରଶମିତ ହୁଏ ।

ଭାରଙ୍ଗ୍ୟାଦ ପାଚନ—ଭଲାଙ୍ଗାର, କୁଡ, ଗବମୂଳ ଜସ୍ତୁମାଣ, ଇନ୍ଦ୍ରଦଳିଆ ମୂଳ, ଶୁଣ୍ଠୀ, ଗୁଡ଼ୁଚି ଦଶମୂଳ (ପୂର୍ବୋକ୍ତବେଲ ଛେଲି ପ୍ରଭୃତି)ଗନ୍ଧଶୁଣ୍ଠୀ, କଙ୍କଡ଼ାଶୃଙ୍ଗୀ, ଦୁରାଳଭା, ବ୍ରାହ୍ମଣେଖାଟିଆ, ପୁରୁଣି ଏ ସମସ୍ତ ଦୁଇତୋଳା, ଗୋମୂତ୍ର ବତିଶ ତୋଳା, ଶେଷ ଆଠ- ତୋଳା, ଏହି କ୍ୱାଥ ପାନକଲେ ଉତ୍କଟ ସନ୍ନିପାତ ଜ୍ୱର ଭଲହୁଏ ।

ଶୃଙ୍ଗାଦ ପାଚନ—କଙ୍କଡ଼ାଶୃଙ୍ଗୀ, ବ୍ରାହ୍ମଣଖାଟିଅ, ହରଡ଼ା ଭଲାଙ୍ଗାର, ପିପ୍ପଳୀ, ଶତାଇତା, ଘରପୋଡ଼ିଆ, ଦେବଦାରୁ, ବଚ, କୁଡ଼, ଦୁରାଳଭା, କାଫଡ଼, ଶୁଣ୍ଠୀ, ମୁଥା, ଧନିଆଁ, କଟୁକୀ, ଇନ୍ଦ୍ରଯବ, ଅଙ୍କାନବନ୍ଧ, ରେଣୁକାମଞ୍ଜି, ଗଜପିପ୍ପଳୀ ଅପାମାରଙ୍ଗମୂଳ, ବଣପୀପଳ ମୂଳ, ଶତାମୂଳ, କାଇଁସ କାକୁଡ଼ି ମୂଳ, ସୁନାରିଫଳଅଠା, ନିମ୍ବଛେଲି, ଗନ୍ଧଶୁଣ୍ଠୀ, ବାକୁଚ, ବଡ଼ଙ୍ଗ, ହଳଦୀ, ଦାରୁହଳଦୀ, ଯୁଆଣୀ ଓ ଅଜମୋଦା ଏ କ୍ୱାଥରେ ହିଙ୍ଗୁ ଓ ଅଦାରସ ପ୍ରକ୍ଷେପ ଦେଇ ପାନକଲେ ଉତ୍କଟ ଅଭିନ୍ୟାସ ଜ୍ୱର ତେର ପ୍ରକାର ତନ୍ଦ୍ରା, ମୋହ, କର୍ଣ୍ଣରୋଗ, ହିକ୍କା ଓ ଶ୍ୱାସାଦ ଭଲ ହୁଏ ।

କିରାତାଦ ସପ୍ତକ ପାଚନ—ଶତାଇତା, ମୁଥା, ଗୁଳୁଚି, ଶୁଣ୍ଠୀ, ଅଙ୍କାନବନ୍ଧମୂଳ,କୁରୁବେଲ ଓ ପଦ୍ମମୃଣାଳ ଏହିସବୁ ପଦାର୍ଥର କ୍ୱାଥ ପାନକଲେ ପିତ୍ତୋଲଣ (ଅଶୁକାସ୍ଥ) ସନ୍ନିପାତ ଜ୍ୱର ବିନଷ୍ଟ ହୁଏ ।

ବୃହତ୍ୟାଦ କ୍ୱାଥ—ଲଟାବେଙ୍କୋଳ, ଅଙ୍କଗନ୍ଧ, ପୁଷ୍କରମୂଳ, (କୁଡ଼), ବ୍ରାହ୍ମଣଖାଟିଆ, ଗନ୍ଧଶୁଣ୍ଠୀ, କକଡ଼ା, ଦୁରାଳଭା, ଇନ୍ଦ୍ରଯବ, ପଟୋଳପତ୍ର ଓ କଟୁକୀ ଏହି ସବୁର କ୍ୱାଥ ପାନ କଲେ ଶ୍ୱାସାଦ ଉପଦ୍ରବ ଯୁକ୍ତ କଫୋଲ୍ୱଣ ( କମ୍ପନ ) ସନ୍ନିପାତ ଜ୍ୱର ବିନଷ୍ଟ ହୁଏ ।

ସ୍ବତୁର୍ଭଦ୍ରକ କ୍ୱାଥ—ଚିରଇତା, ମୁଥା, ଗୁଡ଼ୁଚି ଓ ଶୁଣ୍ଠୀ ଏହି ସବୁର କ୍ୱାଥ ପାନ କଲେ ବାତଶ୍ଳେଷ୍ମୋଲ୍ବଣ ( ଶୀଘ୍ରକାରୀ ) ସନ୍ନିପାତ ଜ୍ୱର ବିନଷ୍ଟ ହୁଏ ।

ପର୍ପଟାଦି କ୍ୱାଥ—ଘରପୋଡ଼ଅ, କାଫଡ଼, କୁଡ଼ ବେଣାଚେର, ରକ୍ତଚନ୍ଦନ, କୁରୁବେଲ୍ଲି, ଶୁଣ୍ଠୀ, ମୁଥା କଙ୍କଡ଼ାଶୃଙ୍ଗୀ ଓ ପିପଳୀ ଏହି ସବୁ ପଦାର୍ଥର କ୍ୱାଥ ପାନ କଲେ ଦାହ, ତୃଷା ଓ ଅଗ୍ନିମାନ୍ଦ୍ୟ; ରକ୍ତ-ପିତ୍ତ ଶ୍ଳେଷ୍ମୋଲ୍ବଣ (ଭଲ୍ଲୁ ) ସନ୍ନିପାତ ଜ୍ୱର ବିନଷ୍ଟ ହୁଏ ।

ଚତୁର୍ଦ୍ଦଶାଙ୍ଗ ପାଚନ—ଦଶମୂଳ, ଚିରେଇତା, ଶୁଣ୍ଠୀ, ମୁଥା, ଗୁଡ଼ୁଚି ଏହି ଦ୍ରବ୍ୟର କ୍ୱାଥ ସେବନ କଲେ ତ୍ରିଦୋଷ ଜ୍ୱର ନାଶ-ହୁଏ । କୋଷ୍ଠ ଶୁଦ୍ଧିର ନିମିତ୍ତ ତ୍ରିବୃତ୍ ଚୂର୍ଣ୍ଣ ୬୦/ ବା ୭୦ । ଅଣା ଏହି କ୍ୱାଥରେ ଦେଇ ମିଶ୍ରିତ କରି ପ୍ରୟୋଗ କରିବ ।

ପଦ୍ମକାଦ୍ୟ ପାଚନ—ପଦ୍ମକାଠ, ରକ୍ତଚନ୍ଦନ, ଘରପୋଡ଼ଅ, ମୁଥା, ଳାଇଜି, ଜୀବକ ( ଅଭାବେ ଗୁଳୁଚି ), ଶ୍ବେତଚନ୍ଦନ, କୁରୁ-ବେଲ, ଯାଷ୍ଟିମଧୁ ଓ ନିମ୍ବଛେଲି, ଏହାର କ୍ୱାଥ ସେବନରେ ସନ୍ନି-ପାତକ ଜ୍ୱର ଭଲ ହୁଏ ।

ଚଣ୍ଡୁଷଣାଦ୍ୟ କ୍ୱାଥ—ତ୍ରିକଟୁ, ତ୍ରିଫଳା, ମୁଥା, କଟୁକୀ, ଇନ୍ଦ୍ର-ଯବ, ବାସଙ୍ଗ ଓ ହରିଦ୍ରା ଏହି ସବୁର କ୍ୱାଥ କରି ସେବନ କଲେ କଣ୍ଠକୁଜ ସାନ୍ନିପାତିକ ଜ୍ୱର ଭଲ ହୁଏ ।

ବିଶାଦ୍ୟ ପାଚନ—ତ୍ରିକଟୁ, ତ୍ରିଫଳା, ମୁଥା, କଟୁକୀ, ପଟୋଳ; ନିମ୍ବଛେଲି, ବାସଙ୍ଗ, ଚିରେଇତା, ଗୁଳୁଚି ଓ ଦୁରାଳଭ ଏହାର କ୍ୱାଥ କରି ସେବନ କଲେ ତ୍ରିଦୋଷଜ ନାନାବିଧ ଜ୍ୱର ଅରୋଗ୍ୟ ହୁଏ ।

ଦ୍ରାକ୍ଷାଦ୍ୟଷ୍ଟାଦଶାଙ୍ଗ ପାଚନ—କସ୍ମିସ୍, ଗୁଡ଼ୁଚି, ଶୁଣ୍ଠୀ, କକଡ଼ାଶୃଙ୍ଗୀ, ମୁଥା ରକ୍ତଚନ୍ଦନ, ଗନ୍ଧଶୁଣ୍ଠୀ, କଟୁକୀ, ଅକାନବିନ୍ଧ, ଚିରେ-ଇତା, ଦୁରାଳଭା, ବେଣାଚେର, ଧନିଆଁ, ପଦ୍ମକାଠ, କୁରୁବେଲ୍ଲି,

ଅଙ୍କସନ୍ତ୍ର, ପୁଷ୍କରମୂଳ; (ଅଭାବେ କୁଡ଼) ଓ ନିମ୍ବଛେଲି; ପ୍ରତ୍ୟେକ କ୍ୱାଥ କରି ସେବନ କଲେ ନାନାବିଧ ଜୀର୍ଣ୍ଣ ଜ୍ୱର ଆରୋଗ୍ୟ ହୁଏ ।

ସବୃଦାଦ୍ୟ ପାଚନ—ଡହୁଡ଼ିମୂଳ, ବଣ ଲଶଗମୂଳ; ତ୍ରିଫଳା; କଟୁକୀ ଓ ସୁନାସୁଅଠା, ଏହାର କ୍ୱାଥ ପ୍ରସ୍ତୁତ କରି ତହିଁରେ ୨°୮ବା ୨ ୦ । ଓଜନରେ ସୋରା ମିଶ୍ରିତ କରି ପାନ କଲେ ଦନ୍ତ ପରିଷ୍କାର ହୁଏ ଓ ସକଳ ପ୍ରକାର ଜ୍ୱର ଭଲ ହୁଏ ।

---

## ବିଷମ ଜ୍ୱର ଓ ପାଚନ

ମଧୂକାଦ ପାଚନ—ଯଷ୍ଟିମଧୁ, ରକ୍ତଚନ୍ଦନ, ମୁଥା; ଅଁଳା; ଧନିଆଁ ବେଣାଚେର; ଗୁଳୁଚି, ପଟୋଳପତ୍ର ଏମାନଙ୍କର ପାଚନ ଯଥା-ନିୟମରେ ପ୍ରସ୍ତୁତ କରି ମଧୁ ଓ ଚିନି ଦେଇ ପାନ କଲେ ନାନାବିଧ ସୁଦାରୁଣ ବିଷମଜ୍ୱର ଶାନ୍ତ ହୁଏ ।

ମଧ୍ୟଭାର୍ଗ୍ୟାଦ୍ୟ ପାଚନ—ବ୍ରାହ୍ମଣେଙ୍କାଟିଆ; ମୁଥା; ଖତପାପଡ଼ା; କୁଡ଼; ଅଦା, ହରିଡ଼ା; ପପଲି, ଦଶମୂଳ; ଏମାନଙ୍କ କ୍ୱାଥ ପାନ କଲେ ଅତିଶୀଘ୍ର ବିଷମଜ୍ୱର; ସନ୍ନିପାତଜ ର ; ଜୀର୍ଣ୍ଣଜ୍ୱର, ଶୋଥ; ଅଗ୍ନିମାନ୍ଦ୍ୟ ଭଲ ହୁଏ ।

ବୃହତ୍ ଭାର୍ଗ୍ୟାଦି ପାଚନ—ବ୍ରାହ୍ମଣଙ୍କାଟିଆ, ହରିଡ଼ା; କଟୁକୀ; କୁଡ଼; ଘରପୋଡ଼ିଅ; ମୁଥା; ପିପଳି, ଗୁଳୁଚି; ଦଶମୂଳ; ଶୁଣ୍ଠି ଏମାନଙ୍କ କ୍ୱାଥ ପାନ କଲେ ଧାତୁଗତ ବିଷମଜ୍ୱର, ଶୀତସଂଯୁକ୍ତ ଜ୍ୱର; ମାନ୍ଦାଗ୍ନି, ଅରୁଚି; ଯକୃତ୍, ପ୍ଲୀହା; ଶୋଥ ନଷ୍ଟ ହୁଏ ।

ଦ୍ରାକ୍ଷାଦ୍ୟ ପାଚନ—ନୀଳଦାସକେରଣ୍ଡା; ଦେବଦାରୁ, ଇନ୍ଦ୍ରଯବ ମଞ୍ଜିଷ୍ଠା, ଶୁଆଁଲଇମୂଳ, ଅଭାନବନ୍ଧ, ଗନ୍ଧଶୁଣ୍ଠି, ଶୁଣ୍ଠି, ବେଣାଚେର, ଛାଗଇଡା; ଗଜପିପଳି, ଭଦଭଦଳିଆ, ପଦ୍ମକାଠ, ହାଡ଼ଯୋଡ଼ା, ଧନିଆ, ମୁଥା ସରଳକାଠ; ସଜନା ଛେଲି, ବାଲା, ହରଡ଼ା, ଅଙ୍କସନ୍ତ୍ର, ନବାଙ୍କୁଡ଼ି ଘରପୋଡ଼ିଅ, କୁଶମୂଳ, କଟୁକୀ, ଚେମଣ୍ଡଲଇମୂଳ, ଗୁଳୁଚି, କୁଡ଼;

ଏମାନଙ୍କର କ୍ୱାଥରେ ମଧୁ ପ୍ରକ୍ଷେପ କରି ପାନ କଲେ ଧାତୁସ୍ଥ ବିଷମ-ଜ୍ୱର ତ୍ରିଦୋଷ ଜନିତଜ୍ୱର ଔଷଧାହୃତଜ୍ୱର, ଦ୍ୱାହୃକଜ୍ୱର;କର୍ମଜ୍ୱର; ଶୋକଜନିତ ଜ୍ୱର, ଦାନ୍ତସଂଯୁକ୍ତ ଜ୍ୱର, କ୍ଷୟକାଶ ସଂଯୁକ୍ତ ଜ୍ୱର, ସତତ ଜ୍ୱର; ଗୁତୁର୍ଥିକ ଜ୍ୱର, ଦୁସାଧ୍ୟ ଜୀର୍ଣ୍ଣଜ୍ୱର ନିବାରିତ ହୁଏ ।

ଚିଲଙ୍ଗାଦି ପାଚନ—ଇନ୍ଦ୍ରଯବ ପଟୋଲପତ୍ର ଓ କଟୁକୀ ଏମାନ-ଙ୍କର କ୍ୱାଥ ମଧୁ ସହ ପାନ କଲେ ସନ୍ତତ ଜ୍ୱର ବା ଅବିଚ୍ଛେଦ ଜ୍ୱର ଶାନ୍ତ ହୁଏ ।

ପଟୋଲାଦି ପାଚନ—ପଟୋଲପତ୍ର; ମୁଥା; ଚେମଣ୍ଡିଲଇ ମୂଳ; ଅକାନବିନ୍ଧ; କଟୁକୀ ଏମାନଙ୍କ କ୍ୱାଥ ସନ୍ତତ ଜ୍ୱର ନିବାରଣ କରେ ।

ନିମ୍ବାଦି ପାଚନ—ନିମ୍ବଛେଲି,ପଟୋଲପତ୍ର,ତ୍ରିଫଳା,ଦ୍ରାକ୍ଷା,ମୁଥା, ଇନ୍ଦ୍ରଯବ, ଏମାନଙ୍କ କ୍ୱାଥ, ବିଷମଜ୍ୱର ନିବାରକ ।

ଚନ୍ଦନାଦି ପାଚନ—ରକ୍ତଚନ୍ଦନ, ଗୁଳୁଚି, ଶୁଣ୍ଠୀ ଓ ଖରେଇଡା ଏମାନଙ୍କ କ୍ୱାଥ ତୃତୀୟକ ଜ୍ୱରର ନିବାରକ ହୁଏ ।

ମହୌଷଧାଦି ପାଚନ—ଶୁଣ୍ଠୀ, ଗୁଳୁଚି, ମୁଥା, ରକ୍ତଚନ୍ଦନ, ବେଣାଚେର, ଏମାନଙ୍କ କ୍ୱାଥରେ ମହୁ ଚିନି ଦେଇ ସେବନ କଲେ ତୃତୀୟକ ଜ୍ୱର ଶାନ୍ତ ହୁଏ ।

ମୁସ୍ତାଦି—ମୁଥା, ଗୁଳୁଚି, ଅଁଳା ଏମାନଙ୍କ କ୍ୱାଥ ଚାତୁର୍ଥିକ ଜ୍ୱର ନାଶକ ।

ବାସାଦି—ବାସଙ୍ଗଛେଲି, ଅଁଳା, ଶାଳପର୍ଣ୍ଣି ଦେବଦାରୁ, ହରିଡ଼ା, ଶୁଣ୍ଠୀ, ଏମାନଙ୍କ କ୍ୱାଥରେ ଚିନି ମହୁ ପ୍ରକ୍ଷେପ କରି ପାନ-କଲେ ଚାତୁର୍ଥିକ ଜ୍ୱର ଶାନ୍ତ ହୁଏ ।

ପଥ୍ୟାଦି—ହରିଡ଼ା, ଶାଳପର୍ଣ୍ଣି, ଶୁଣ୍ଠୀ, ଦେବଦାରୁ, ଅଁଳା, ବାସଙ୍ଗଛେଲି ଏମାନଙ୍କ କ୍ୱାଥ ଚିନି ମହୁ ସହିତରେ ପାନ କଲେ ଚାତୁର୍ଥିକ ଜ୍ୱର ଶାନ୍ତ ହୁଏ ।

ଭଦ୍ରାଦ ପାଚନ—ଡାଫଡ଼, ଧନଅଁ ଶୁଣ୍ଠୀ, ଗୁଳୁଚ, ମୁଥା, ଘଦ୍ମକାଠ, ରକ୍ତଚନ୍ଦନ, ଚଂଡରଇଗା ପଟୋଲ ପତ୍ର, ବାଙ୍ଗସ ଛେଲି, ଲୁଦ୍ର, କଟୁକୀ ଇନ୍ଦ୍ରପବ, ନିମ୍ବ ଛେଲି ବ୍ରାହ୍ମଣହାଟିଅ ଓ ଘରପୋଡ଼ଅ ଏହି ସମସ୍ତ ଦ୍ରବ୍ୟର କ୍ୱାଥ କରି ପାନକଲେ ଶୀଘ୍ର ପୂର୍ବ ଜ୍ୱର ନାଶକ ।

କସ୍ତୁରକାଦ ପାଚନ—ଧାନ୍ୟାଡ଼ା, ସୁନାସ୍ୱଫଳ ଅଠା, କଟୁକୀ ଛତୁଙ୍ଗ ମୂଳ ଓ ହରଡ଼ା ଏହି ସମସ୍ତ କ୍ୱାଥ କରି ପିଅଇଲେ ଦାହ ପିପାସା ଓ ବଷମ ଜ୍ୱର ନାଶକରେ ।

ନିଦ୍ରାଗଧିକାଦ ପାଚନ—ଅଙ୍କବନ୍ତ,ଶୁଣ୍ଠୀ, ଓ଼ଁଗୁଳୁଚ, ଏହି ସବୁର କ୍ୱାଥ କରି ପିପଳୀ ଚୂର୍ଣ୍ଣ ପରଖ ଦେଇ ପିଅଇବ । କନ୍ତୁ ଏ ଜ୍ୱରରେ ପିତ୍ତ ପ୍ରକୋପ ଥିଲେ ପିପଳୀ ନଦେଇ ମହୁ ପରଖ ଦେଇ ଖାଇଲେ ଜୀର୍ଣ୍ଣଜ୍ୱର, ଅରୁଚ, କାଶ, ଶ୍ୱାସ, ଶୂଳଶ୍ୱାସ ଅଗ୍ନିମାନ୍ଦ୍ୟ ଭଲ ହୁଏ ।

ବାଳକାଦ ପାଚନ—ଲୁହୁବେଲ, ପଦ୍ମପତ୍ର, ରକ୍ତଚନ୍ଦନ, ବେଣାଚେର, ଡାଲଚିନି, ଧନିଅଁ ଓ ଜଟାମାଂସୀ, ଏହାର କ୍ୱାଥ ସେବନ କଲେ କାଶଜ୍ୱର ନିବାରିତ ହୁଏ ।

ପଥ୍ୟାଦ ପାଚନ—ହରଡ଼ା, ସୁନାସ୍ୱ, କଟୁକୀ, ଛତୁଙ୍ଗମୂଳ ଓ ଅଁଳା ଏହାର କ୍ୱାଥ କରି ସେବନ କଲେ ବାଳକବୋଧ ଜ୍ୱର ଜୀର୍ଣ୍ଣଜ୍ୱର ନଷ୍ଟ ହୁଏ ।

ବାସକାଦ କ୍ୱାଥ—ବାସଙ୍ଗ, ମୁଥା, ଗୁଡୁଚ, ପଟୋଳ, ଶୁଣ୍ଠୀ, ଧନିଅଁ ଓ ଚଂରଇଗା ମହୁ ସହିତ ପାନ କଲେ ଦୁଷିତ ଜଳ ଜନିତ ଜ୍ୱର ଓ ସନ୍ନିପାତ ଜ୍ୱର ଭଲହୁଏ ।

ପଟୋଳାଦ ପଚନ—ପଟୋଳ, ଇନ୍ଦ୍ରଯବ, ଦେମଡ଼ନଇମୂଳ, ହରଡ଼ା, ନିମ୍ବଛେଲି ଓ କୁଳୁବେଲି, ଏହାର କ୍ୱାଥ କରି ସେବନ କଲେ ସନ୍ତତକ ଜ୍ୱର ଭଲ ହୁଏ ।

ସ୍ୱଳ୍ପଭାର୍ଙ୍ଗ୍ୟାଦ ପାଚନ—ବ୍ରାହ୍ମଣଙ୍ଗାଟିଅ, ମୁଥା, ଘରଯୋଡ଼ିଅ, ଧନିଅଁ,ଦୁରାଲଭା, ଶୁଣ୍ଠୀ, ଗରେଇଡା, କୁଡ଼, ପିପଳୀ, ବ୍ୟାଙ୍ଗୁଡ଼ ( ଲଙ୍କାଟେଙ୍ଗେଡାଳ ) ଓ ଗୁଳୁଚ, ଏହାର କ୍ୱାଥ କରି ପାନକଲେ ଅରୁଚକ, ସନ୍ତତକ, ତୃଷାଯୁକ, ଗୃତ୍ରୁଟିଚ ଓ ପୁରାତନ ଜ୍ୱର ଭଲହୁଏ

ଭାଗରାଦ୍ୟ ପାଚନ—ଶୁଣ୍ଠୀ, ମୁଥା, ଗରେଇଡା, ଅଙ୍କରାନ୍ତ, ଅଁଳା, ଗୁଳୁଚ, ବଳାଡମୂଳ, କଟୁକୀ, ଇନ୍ଦ୍ରଯବ ଓ ଦୁରାଲଭା ଏହାର କ୍ୱାଥ ପିପଳୀ, ଚୂର୍ଣ୍ଣସହିତ ମଧୁ ଦେଇ ପାନ କଲେ ପୈତ୍ତିକ, ଶ୍ଳୈଷ୍ମିକ, ଦ୍ୱନ୍ଦଜ ଓ ଶରୋପନା ରାଜି ଜ୍ୱର ଆରୋଗ୍ୟ ହୁଏ ।

ଦାବଂଦ—ଦାରୁହଳଦୀ, ଇନ୍ଦ୍ରଯବ, ମଞ୍ଜିଷ୍ଠା, ବୃହତୀ, ଦେବଦାରୁ, ଗୁଳୁଚ, ଅମ୍ବିଳଭ, ଘରପୋଡ଼ଅ, ଶୁଅଁଲଇ, ଭଗର ପାଦ, ଗଜପିପଳୀ ଅଙ୍କରାନ୍ତ,ନିମ୍ବଛେଲି, ମୁଥା, କୁଡ଼, ଶୁଣ୍ଠୀ, ପଦ୍ମକାଠ, ଗନ୍ଧଶୁଣ୍ଠୀ, ବାସଙ୍ଗମୂଳ, ସରଳକାଠ, ଭୃମିର, ହାଡ଼ଯୋଡ଼ା, ଗରେଇଡା, ଖାଲିଆ, ମୁଣ୍ଡି, ଅଡାଳବନ୍ଦମୂଳ, କୁଶମୂଳ, କଟୁକୀ ପିପଳୀ, ଧନିଅଁ; ଏମାନଙ୍କ କ୍ୱାଥ ମଧୁସହ ପାନକଲେ ବାତକ, ପୈତ୍ତିକ, ଶ୍ଳେଷ୍ମିକ, ଦ୍ୱନ୍ଦଜ ଓ ସାନ୍ନିପାତକ ଜ୍ୱର ସନ୍ତତାଦ ସୁଦାରୁଣ,ବଷମଜ୍ୱର,ଅନ୍ତସ୍ଥ ଓ ବହିସ୍ଥ ଜ୍ୱର, ରାଜିଜ୍ୱର, ଶୀତ କମ୍ପ ଦାହ, କୃଶତା, ଘର୍ମ ନିର୍ଗମ, ବାନ୍ତ, ଗ୍ରହଣୀ, ଅତିସ୍ମାର, କାଶ, କାମଳ, ଶ୍ୱାସ, ଶୋଥ, ଅଗ୍ନିମାନ୍ଦ୍ୟ, ଅଙ୍ଗରଣ ଅନ୍ତବଧ ଶୂଳ. ବଂଶବଧମେହ, ପ୍ଲୀହା, ଯକୃତ ଅଗ୍ର ମାଂସ, ହଳିମକ ପ୍ରଭୃତି ରୋଗ ବଜ୍ରାଭିହତ ବୃକ୍ଷପର ବନଷ୍ଟ ହୁଏ ।



## ଯକୃତ ପ୍ଲୀହା ଜ୍ୱରରେ ପାଚନ

ପଥ୍ୟାଦ ପାଚନ—ହରଡ଼ା, ସୁନାରାଫଳ ମଞ୍ଜା, କଟୁକୀ, ତିହୁଡ଼ି ଅଁଳା, ଏ ସମସ୍ତ ମିଳି ଦୁଇତୋଳା; ପାଣି ୩୨ ତୋଳାରେ ସିଦ୍ଧାଇ

ଢୋଙ୍କା ଥାଇଁ ଓହ୍ଲା'ଇ ଶୀତଳ କରି ପାନ କରାଇଲେ ଆମଦୋଷ ନଷ୍ଟ ହୋଇ କୋଷ୍ଠ ପରିଷ୍କାର ହୁଏ ।

ଆମଲକ୍ୟାଦ ପାଚନ—ଅଁଳା, ଚିତାମୂଳ, ହରିଡ଼ା ପିପଳି ଓ ସୈନ୍ଧବ ଏମାନଙ୍କ ସମଭାଗଚୂର୍ଣ୍ଣ ସର୍ବବିଧ ଜ୍ୱର ନାଶକ ,ଭେଦକ ରୋଚକ, ଶ୍ଳେଷ୍ମଘ୍ନ, ଅଗ୍ନି କର ଓ ପାଚକ

ନିଦଗ୍ଧିକାଦ ପାଚନ—ଶାଳପର୍ଣ୍ଣି, ଗୁଳୁଲିଆ, ବୃହତି, ଅଙ୍କ-ଘଣ୍ଟି, ଗୋକ୍ଷୁରି, ହରିଡ଼ା ଏବଂ ରୋହିଡ଼ା ( ଡାଳିରଙ୍ଗ ) ଗଛଚେଲି; ଏମାନଙ୍କ କ୍ୱାଥରେ ଗୁରିଅଣା ଓଜନର ଯବକ୍ଷାର, ଦୁଇଅଣା ଓଜନର ପିପଳି ଚୂର୍ଣ୍ଣ ପ୍ରକ୍ଷେପ ଦେଇ ପାନ କଲେ ପ୍ଲିହା ଜ୍ୱର ନିବାରଣ ହୁଏ ।

ସୌଭାଞ୍ଜନ କ୍ୱାଥ—ସଜନାଛେଲି କ୍ୱାଥରେ ସୈନ୍ଧବଲବଣ; ଚିତାମୂଳ ଚୂର୍ଣ୍ଣ ଓ ପିପଳି ଚୂର୍ଣ୍ଣ ପ୍ରକ୍ଷେପ କରି ପାନ କଲେ ଯକୃତ୍ ଓ ପ୍ଲୀହା ଜ୍ୱର ଶାନ୍ତ ହୁଏ ।

ରୋହିତକାଦ ପାଚନ—ରୋହିତଛେଲି, ହରିଡ଼ା ଏ ଦୁହିଙ୍କ, କ୍ୱାଥର ଯବକ୍ଷାର ଓ ପିପ୍ପଳିଚୂର୍ଣ୍ଣ ପ୍ରକ୍ଷେପ କରି ପାନ କଲେ ପ୍ଲୀହା ଓ ଯକୃତ୍ ଉପଶମ ହୁଏ ।

ମଧୁକାଦ ପାଚନ—ଯାଷ୍ଟି ମଧୁ; ରକ୍ତଚନ୍ଦନ, ମୁଥା, ଅଁଳା; ଧନିଆଁ ବେଣାଚେର; ଗୁଳଞ୍ଚ ଓ ପଟୋଳ ଏହାର କ୍ୱାଥ କରି ୨ ମଷା ମହୁ ୨ ମଷା ଚିନି ପ୍ରକ୍ଷେପ ଦେଇ ପାନ' କଲେ ସର୍ବପ୍ରକାର ଜ୍ୱର ଓ ଜ୍ୱରରୁ ଯେଉଁ ରୋଗ ଉତ୍ପନ୍ନ ହୁଏ ସେ ସବୁ ଆରୋଗ୍ୟ ହୁଏ ।

ଉଶୀରାଦ ପାଚନ—ବେଣାଚେର, ରକ୍ତଚନ୍ଦନ, ମୁଥା, ଗୁଳୁଞ୍ଚି, ଧନିଆଁ ଓ ଶୁଣ୍ଠୀ ଏଥିର କ୍ୱାଥ କରି ଚିନି ଓ ମହୁ ପକାଇ ଦେଇ ପିଇଲେ ତୃଷା ଦାହଯୁକ୍ତ ତୃତୀୟକ ଜ୍ୱର ଭଲ ହୁଏ ।

ପଟୋଳାଦ ପାଚନ—ପଟୋଳ, ନିମ୍ବଛେଲି, କିସମିସ୍, ଶୁଆଁଳିଈ ହରିଡ଼ା, ଅଁଳା, ବାହାଡ଼ା ଓ ବାହଙ୍ଗ ଛେଲି ଏହି ସବୁର କ୍ୱାଥ; କରି ଚିନି ମହୁ ପକାଇ ଦେଇ ପାନକଲେ ଏକାହିକ ଜ୍ୱର ଭଲ ହୁଏ ।

ବାସାଦ ପାଚନ—ବାସଙ୍ଗ ଛେଲି, ଅଁଳା, ଶାଳପର୍ଣ୍ଣୀ, ଦେବଦାରୁ, ହରଡ଼ା ଓ ଶୁଣ୍ଠୀ ଏହାର କ୍ୱାଥ କରି ମହୁ ଓ ଚିନି ପକାଇ ଦେଇ ସେବନ କଲେ ସ୍ୱରୂପଥିକ ଜ୍ୱର ଭଲ ହୁଏ ।

ମହାବଳାଦ ପାଚନ—ମହାବଳା ମୂଳ କୋଂଳା ଓ ଶୁଣ୍ଠୀ ଛୋଂଳା ନେଇ କ୍ୱାଥ କରି ପାନ କଲେ ବିଷମ ଜ୍ୱରାଦ ଭଲହୁଏ ।

ଫଳ ତ୍ରିକାଦ ପାଚନ—ହରଡ଼ା, ବାହାଡ଼ା, ଅଁଳା, ଗୁଳୁଚି, ବାସଙ୍ଗ ଛେଲି, କଟୁକୀ, ଚିରେଇତା ଓ ନିମ୍ବଛେଲି ଏହି ଆଠଗୋଟିର କ୍ୱାଥ ମହୁ ପକାଇ ଦେଇ ପିଇଲେ ପାଣ୍ଡୁ, କାମଳ, ହଳିମକଭଲହୁଏ ।

ଯବକ୍ଷାରାଦ ପାଚନ—ଯବକ୍ଷାର, ବିଡ଼ଙ୍ଗ, ପିପଳୀ ଓ ଲଟାକରଞ୍ଜ ମୂଳ, ଏହାର କ୍ୱାଥ ପାନ କରିବେ ଯକୃତ୍ ଓ ପ୍ଳୀହାରୋଗ ନଷ୍ଟ ହୁଏ ।

ରୋହିତକାଦ ପାଚନ—ରୋହିତକ (ଅଶ୍ୱରେ ବାହାଡ଼ା ଓ ହରଡ଼ା) ଯଥାବିଧି କ୍ୱାଥ କରି ପ୍ରାତଃକାଳରେ ପିପଳି ଚୂର୍ଣ୍ଣ ଓ ଯବକ୍ଷାରର ସହିତ ସେବନ କଲେ ପ୍ଳୀହା ଓ ଯକୃତ୍ ଭଲ ହୁଏ ।

ଶୌଭାଞ୍ଜନ କ୍ୱାଥ—ସଜନା ଛେଲିର କ୍ୱାଥରେ, ବିବେଚନାକରି ସୈନ୍ଧବ, ଚିତାମୂଳ ଓ ପିପଳୀଚୂର୍ଣ୍ଣ ପକାଇ ଦେଇ ପାନ କଲେ ପ୍ଳୀହା ଓ ଯକୃତ୍ ରୋଗ ଭଲ ହୁଏ ।

———

## ଜ୍ୱରାତୀସାରରେ ପାଚନ

ପାଠାଦ ପାଚନ—ଅକାନବିନ୍ଧ, ଇନ୍ଦ୍ରଯବ, ଚିରେଇତା, ମୁଥା, ଘରପୋଡ଼ିଅ, ଗୁଳୁଚି ଓ ଶୁଣ୍ଠୀ ଜ୍ୱରାତିସାରର ଆମ ଅବସ୍ଥାରେ ଏ କ୍ୱାଥ ବ୍ୟବସ୍ଥା କରିବ ।

ଧନ୍ୟାକଶୁଣ୍ଠୀ ପାଚନ—ଧନିଅଁ ଓ ଶୁଣ୍ଠୀର କ୍ୱାଥ ପିଇବାକୁ ଦେବ; ଏ.ଆମଦୋଷ ନାଶକ ଓ ଅଗ୍ନିଦୀପକ ।

ହ୍ରୀବେରାଦ୍ୟ ପାଚନ—କୁରୁବେଲ, ଅତେଷାସୀ, ମୁଥା, ବେଲଶୁଣ୍ଠା ଶୁଣ୍ଠୀ ଓ ଧନିଆଁ ; ଏହାର କ୍ୱାଥ ପାନ କଲେ ଉଦର ବେଦନା, ମଳ-ବଦ୍ଧତା, ରକ୍ତନିର୍ଗତ ଭଲ ହୁଏ ।

ଉଶୀରାଦ୍ୟ ପାଚନ—ବେଣାଚେର, କୁରୁବେଲ, ମୁଥା, ଧନିଆଁ, ଶୁଣ୍ଠୀ, ବଗଧନକାନ୍ତା (କରବା), ଧାତୁକୀଫୁଲ, ଲୋଧ ଓ ବେଲଶୁଣ୍ଠା, ଏ କ୍ୱାଥ ପାନ କଲେ ଉପରୋକ୍ତ ପାଚନ ସବୁ ଫଳଦାୟକ ।

ଗୁଡ଼ୁଚ୍ୟାଦ୍ୟ ପାଚନ—ଗୁଡ଼ୁଚି, ଅତେଷାସୀ, ଧନିଆଁ, ଶୁଣ୍ଠୀ, ବେଲଶୁଣ୍ଠା, ମୁଥା, କୁରୁବେଲ, ଅକାନବନ୍ଧମୂଳ, ଚକେଇଚା, ପିତାକୋରୁଆ ଛେଲି, ରକ୍ତଚନ୍ଦନ, ବେଣାଚେର ଓ ପଦ୍ମକାଠ ଏମାନଙ୍କ କ୍ୱାଥ ଶୀତଳ ହେଲେ ପାନକରିବାକୁ ହେବ, ଜ୍ୱରାତିସାରେ ବାନ୍ତି, ଅରୁଚି, ପିପାସା ଓ ଦାହ ଭଲ ହୁଏ ।

ନାଗରାଦ୍ୟ ପାଚନ—ଶୁଣ୍ଠୀ, ଅତେଷାସୀ, ମୁଥା, ଚକେଇଚା, ଗୁଡ଼ୁଚି ଓ ପିତା କୋରୁଆଁ ଛେଲି ଏହାର କ୍ୱାଥ ପାନକଲେ ଜ୍ୱର ଓ ଅତିସାର ଭଲ ହୁଏ ।

କଳିଙ୍ଗାଦ୍ୟ ପାଚନ—ଇନ୍ଦ୍ରଯବ, ଅତେଷାସୀ, ଶୁଣ୍ଠୀ, ଚକେଇଚା, କୁରୁବେଲ ଓ ଦୁବଲଭା ଏହାର କ୍ୱାଥ ପାନକଲେ ଜ୍ୱର ଅତିସାର ନିଶ୍ଚୟ ଭଲ ହୁଏ ।

ବିଲ୍ୱାଦ୍ୟ ପାଚନ—ବେଲ, ଶୁଣ୍ଠୀ, ମୁଥା, ଅତେଷାସୀ, ଅକାନବନ୍ଧ, ଚକେଇଚା ଓ ଇନ୍ଦ୍ରଯବ ଏହି ଦ୍ରବ୍ୟର କ୍ୱାଥ ମହୁ [illegible] । ମିଶ୍ରିତ କରି ପାନ କଲେ ଭୟାନକ ଜ୍ୱର ଅତିସାର ବିନଷ୍ଟ ହୁଏ ।

ଘନଜଳାଦ୍ୟ ପାଚନ—ମୁଥା, କୁରୁବେଲ, ଅକାନବନ୍ଧ, ଅତେଷାସୀ, ହରଡ଼ା, ନୀଳୋତ୍ପଳ ( ଅଭ୍ରବେ କୁଡ଼ ), ଧନିଆଁ, କଟୁକୀ, ଶୁଣ୍ଠୀ ଓ ଇନ୍ଦ୍ରଯବ ଏହାର କ୍ୱାଥକରି ପାନକଲେ ଅତିସାରଯୁକ୍ତ ଜ୍ୱର ଭଲହୁଏ

ବିଡ଼ଙ୍ଗାଦ୍ୟ ପାଚନ—ବିଡ଼ଙ୍ଗ, ଅତେଷାସୀ, ମୁଥା, ଅକାନବନ୍ଧ, ଦେବଦାରୁ ଓ ଇନ୍ଦ୍ରଯବ ଏହାର କ୍ୱାଥ କରି ମରିଚଚୂର୍ଣ୍ଣ ପରଖ ଦେଇ ପାନକଲେ ଶୋଥ ଓ ଅତିସାର ଭଲ ହୁଏ ।

କୁଟଜାଦ ପାଚନ—ପିତାକୋଳୁଅ ଛେଲି, ଶୁଣ୍ଠୀ, ମୁଥା,ଗୁଡ଼ୁଚି ଓ ଅତୋଟୀ ଏହାର କ୍ୱାଥ ସେବନ କଲେ ଜ୍ୱର ଅତିସାର ନଷ୍ଟହୁଏ ।

କଷ୍ଟଦାଦ ପାଚନ—ଚରେଇତା, ମୁଥା, ଗୁଡ଼ୁଚି, ଶୁଣ୍ଠୀ, ରକ୍ତଚନ୍ଦନ, କୁଲୁବେଲ ଓ ଇନ୍ଦ୍ରଯବ ଏହାର କ୍ୱାଥ ପାନ କଲେ ଶୋଥଯୁକ୍ତ ଅତିସାର ଜ୍ୱର ଭଲ ହୁଏ ।

ଧାନ୍ୟନାଗରାଦ ପାଚନ—ଧନିଆଁ, ଶୁଣ୍ଠୀ, ବେଲଶୁଣ୍ଠା, ମୁଥା, ମଲରୋଧକ ଓ ଅଗ୍ନିର ଦୀପ୍ତିକର ।

ଜପୃଲାଷ୍ଟକ ପାଚନ—କୁସ୍ତୁପର୍ଣ୍ଣି, ବାଇଅଁଳା, ବେଲଶୁଣ୍ଠା, ଧନିଆଁ, ଶୁଣ୍ଠୀ ଓ ନୀଳଛାପୃଲ ଯଥାବିଧି କ୍ୱାଥ କରି ଦାଡ଼ିମ୍ବ ରସ ମିଶ୍ରିତ କରି ସେବନ କଲେ ଜ୍ୱର ଓ ଅତିସାର ଭଲ ହୁଏ ।

ଭୂନମ୍ବାଦ ପାଚନ—ଚିରାଇତା ବେଲଶୁଣ୍ଠା, କୁଲୁବେଲ, ଗୁଡ଼ୁଚି, ମୁଥା ଓ ଇନ୍ଦ୍ରଯବ ଏହାର କ୍ୱାଥ ପାନ କଲେ ଆମ ପାଚକ ଶୋଥ ଓ ଜ୍ୱରାତସାର ନାଶ କରେ ।

ପାଠାଦ କ୍ୱାଥ—ଅକାନବିନ୍ଧ, କୁଲୁବେଲ, ମୁଥା, ବେଲଶୁଣ୍ଠା, ଶୁଣ୍ଠୀ, ଅଟୋସୀ ଓ ଧନିଆଁ, ଏହାର କ୍ୱାଥ ସେବନ କଲେ ଅରୁଚି; ବମି ଓ ଜ୍ୱରାତସାର ଭଲ ହୁଏ ଓ ପାଚକ ଅଟେ ।

ପିପ୍ପଲାଦ କ୍ୱାଥ—ପିପଳି, ମେମଞ୍ଜଲିର ମୂଳ, ଶୁଆଁଳିର ଚେରଡ଼ା, ଅଁଳା ଓ ଶୁଣ୍ଠୀ ଏହାର କ୍ୱାଥ ମହୁ ପକାଇ ଦେଇ ପାନ କଲେ ଆମାଶୟ ରୋଗ, ଅଗ୍ନିମାନ୍ଦ୍ୟ, ଦୌର୍ବଲ୍ୟ, ଅରୁଚି ଓ ବମି ଭଲ ହୁଏ ।

---

## ଅତିସାର ଓ ରକ୍ତ ଅତିସାରରେ ପାଚନ

କଣ୍ଟଠାଦ ପାଚନ—କଚରଙ୍ଗା ପତ୍ର ( ଅଭାବେ କଣ୍ଟକ ପତ୍ର ), ତାଳମ୍ବପତ୍ର, ଜାମୁପତ୍ର, ସିଙ୍ଗଡ଼ାପତ୍ର,କୁଲୁବେଲ, ମୁଥା ଓ ଶୁଣ୍ଠୀ ଏହି ସମସ୍ତର କ୍ୱାଥ କରି ପାନ କଲେ ଅତି ବେଗବାନ ଅତିସାର ମଧ୍ୟ ବନ୍ଦ ହୁଏ ।

ବଗ୍ଦ୍ଧ କଷାୟ—ବଚ, ଅତେଇ ଶୀ, ମୁଥା, ଇନ୍ଦ୍ରଯବ ଏହି ସବୁର କ୍ୱାଥ କରି ପାନ କଲେ ବାତଜ ଅତିସାର ଭଲ ହୁଏ ।

ପଥ୍ୟାଦ ପାଚନ—ହରିଡ଼ା, ଶତାମୂଳ, କଟୁକୀ, ଅକାନବନ୍ଧ-ମୂଳ, ବଚ, ମୁଥା, ଇନ୍ଦ୍ରଯବ ଓ ଶୁଣ୍ଠୀ ଏହି କ୍ୱାଥ ସେବନ କଲେ ଶ୍ଳେଷ୍ମଜ ଅତିସାର ଭଲ ହୁଏ ।

ମୁସ୍ତାଦ ପାଚନ—ମୁଥା, ଅତେଇଶୀ, ମୂର୍ଖାମୂଳ, ବଚ ଓ ପିଠା-କୋଳୁଅ ଛେଲି, ଏହି କ୍ୱାଥ ସେବନ କଲେ ପିତ୍ତ ଶ୍ଳେଷ୍ମାତିସାର ଭଲ ହୁଏ ।

ଶତକାଦ ପାଚନ—ଶତାମୂଳ, ଅତେଇଶୀ, ମୁଥା, ବାଳୁଅଁଳା, ବେଲଶୁଣ୍ଠୀ, ଶୁଣ୍ଠୀ, ପିଠାକୋଳୁଅ ଛେଲି, ଇନ୍ଦ୍ରଯବ ଓ ହରିଡ଼ା ଏହାର କ୍ୱାଥ ବାତ ଶ୍ଳେଷ୍ମାତିସାରରେ ପ୍ରୟୋଗ ହୁଏ ।

କଟଫଳାଦ ପାଚନ—କାଫଡ଼, ଅତେଇଶୀ, ମୁଥା, ପିଠାକୋଳୁଅ ଛେଲି ଓ ଶୁଣ୍ଠୀ ଏହି ସମସ୍ତ ଦ୍ରବ୍ୟର କ୍ୱାଥ ପାନ କଲେ ପିତ୍ତଜ ଅତିସାର ଭଲ ହୁଏ ।

ସମଙ୍ଗାଦ ପାଚନ—ବାଡ଼ୁଅଁଳା, ଅତେଇଶୀ, ମୁଥା, ଶୁଣ୍ଠୀ; କୁରୁଚଛେଲି, ଧାତୁକୀ ଫୁଲ, ଇନ୍ଦ୍ରଯବ ଓ ବେଲଶୁଣ୍ଠୀ ଏହି ସମସ୍ତ ଦ୍ରବ୍ୟର କ୍ୱାଥ ପାନ କଲେ ତ୍ରିଦୋଷାତିସାର ଭଲହୁଏ ।

କଳିଙ୍ଗାଦ ପାଚନ—ଇନ୍ଦ୍ରଯବ, ବଚ, ମୁଥା, ଦେବଦାରୁ ଓ ଅତେଇଶୀ, ଏହି ସମସ୍ତ ଦ୍ରବ୍ୟର କ୍ୱାଥ ପାନ କଲେ ବାତ ପିତ୍ତାତିସାର ଭଲ ହୁଏ ।

କୁଟଜ ଦାଡ଼ିମ୍ବ କଷାୟ—ପିଠାକୋଳୁଅ ଛେଲି ଓ କଷି ଦାଡ଼ିମ୍ବର ଚୋପା ଏହି କ୍ୱାଥ ମହୁ ସହିତ ପାନ କଲେ ରକ୍ତାତିସାର ଭଲ ହୁଏ ।

କୁଟଜାଦ ପାଚନ—ପିଠାକୋଳୁଅ ଛେଲି, ଦାଡ଼ିମ୍ବ ଚୋପା; ମୁଥା, ଧାତୁକୀଫୁଲ, ବେଲଶୁଣ୍ଠୀ କୁରୁଚଛେଲି, ଲୋଧ, ରକ୍ତଚନ୍ଦନ ଓ

ଅଶ୍ୱଗନ୍ଧା ମୂଳ ଏହି ସମସ୍ତ ଦ୍ରବ୍ୟର କ୍ୱାଥରେ ମହୁ ପରଶ ଦେଇ ପାନ କଲେ ରକ୍ତାତିସାର, ବେଦନା ଓ ଆମ ପ୍ରଶମିତ ହୁଏ ।

ଧାନ୍ୟ ପାଞ୍ଚକ ପାଚନ—ଧନିଆଁ, ଶୁଣ୍ଠି, ମୁଥା, କୁରୁବେଲ ଓ ବେଲଶୁଣ୍ଠା, ଏହାର କ୍ୱାଥ କରି ପାନ କଲେ ଅମାତିସାରରେ ଆମ ଶୂଳ ଓ ମଳର ବିବଦ୍ଧତା ନିବାରଣ ଓ ଦୋଷ ପରିପାକ, ଅଗ୍ନିର ଦୀପନ ହୁଏ ।

କଳିଙ୍ଗାଦି ପାଚନ—ଇନ୍ଦ୍ରଯବ, ଅଜୋଆନୀ, ହିଙ୍ଗୁ, ହରିଡ଼ା, ସଉଚଳଲବଣ ଓ ବଚ ଏହି କ୍ୱାଥ ପାନ କଲେ ଉଦର ବେଦନା, ମଳର ବିବଦ୍ଧତା ଓ ଆମାତିସାର ଭଲହୁଏ ।

ଚତୁଷ୍ପାଯୁ କ୍ୱାଥ—କୃଷ୍ଣପର୍ଣ୍ଣି, ଗୋଖୁରା, ବଗ୍ରହକାନ୍ତା ଓ ଅଙ୍କ-ଗନ୍ଧ ଏହାର କ୍ୱାଥକରି ପାନକଲେ ବାତାତିସାର ଭଲ ହୁଏ ।

ବିଲ୍ୱାଦି ପାଚନ—ବେଲଶୁଣ୍ଠା ୧ ତୋଳା, ଆମ୍ବକଷି ୧ ତୋଳା ଉଭୟର କ୍ୱାଥକରି ଶୀତଳ ଏବଂ ମହୁ ପରଶ ଦେଇ ଖାଇଲେ ନାନାବିଧ ଅତିସାର, ନାନାବିଧ ଉପସର୍ଗ ଅଗ୍ରମ ହୁଏ ।

ଶୁଠାଦି ପାଚନ—ଶୁଣ୍ଠି, ଅଜୋଆନୀ, ମୁଥା ଏହାର କ୍ୱାଥକରି ପାନକଲେ, ତୃଷା, ପେଟର କାମୁଡ଼ା, ଅତିସାର ଭଲ ହୁଏ । ଏହା ପାଚକ, ଅଗ୍ନି ବୃଦ୍ଧିକର ।

ଧାନ୍ୟଚତୁଷ୍କ ପାଚନ—ଧନିଆଁ, ମୁଥା, ବେଣାଚେର, କୁରୁବେଲ ଏହାର କାଥରେ ମହୁ ପରଶ ଦେଇ ପାନକଲେ ନାନାବିଧ ଅତିସାର, ଅମଜନ୍ୟ ବେଦନା ଅଗ୍ରମ ହୁଏ ।

ବତ୍ୟାଦି କ୍ୱାଥ—ଗୁଡ଼ୁଚିକାଠ, ଅଜୋଆନୀ, ମୁଥା, କଞ୍ଚାବେଲଶୁଣ୍ଠା ଶୁଣ୍ଠି, ଚିତାଚୋରୁଅଚେଲ, ଇନ୍ଦ୍ରଯବ, ହରିଡ଼ା ଏହାର କ୍ୱାଥ ପାନକଲେ ବମି ଏବଂ କଫାତିସାର ଭଲ ହୁଏ ।

ଧନ୍ୟାଦି କ୍ୱାଥ—ଧନିଆ, ଶୁଣ୍ଠି, ମୁଥା, କୁରୁବେଲ, ବାଉଅଁଳା ବେଲଶୁଣ୍ଠା, ଗୋଖୁରା, କୃଷ୍ଣପର୍ଣ୍ଣି, ଏହାର କ୍ୱାଥ ପାନକଲେ ଅତିସାର ଭଲ ହୁଏ କିନ୍ତୁ ରକ୍ତାତିସାର ରୋଗୀକୁ ଦେବ ନାହିଁ ।

ଯୋଗ ଚତୁଷ୍ଟୟ କ୍ୱାଥ—(୧)ବେଲଶୁଣ୍ଠା, ଭଙ୍ଗରାଙ୍ଗୀ, ମୁଥା, ହରଡ଼ା, ଶୁଣ୍ଠୀ,(୨) ବଚ, ବଡ଼ଙ୍ଗ, ଯୁଆଣୀ, ଧନିଆ ଦେବଦାରୁ(୩) କୁଡ଼, ଅତେଇଷୀ, ଅଜାନବନ୍ଧ, ଚେିଁ, ( ଗୁଳିଜାଠ ), କଟୁକୀ ( ୪ ) ପିପଳି, ପିପଳୀମୂଳ, ରକ୍ତଚନ୍ଦନ, ଗଜପିପ୍ପଳି ଏହି ଗୁରୁଟାରୁ ଯେ କୌଣସି ଗୋଟିକର କ୍ୱାଥ ପାନକଲେ ଶ୍ଳେଷ୍ମାତିସାର ଅଗ୍ନିବଳ ବର୍ଦ୍ଧକ, ଅତିସାର ଆରୋଗ୍ୟ ହୁଏ ଏବଂ ଶରୀରର ବଳ ବୃଦ୍ଧି ହୁଏ ।

ପଥ୍ୟାଦି କ୍ୱାଥ—ହରିତକି, ଦେବଦାରୁ, ବଚ, ମୁଥା, ଶୁଣ୍ଠୀ, ଅତେଇଷୀ ଏହାର କ୍ୱାଥ ପାନ କଲେ ଆମାତିସାର ଆରୋଗ୍ୟ ହୁଏ ।

ଶାଳପର୍ଣ୍ଣ୍ୟାଦି ପାଚନ—ଶାଳପର୍ଣ୍ଣି, ବାଇଅଁଳା, ବେଲଶୁଣ୍ଠା, ଧନିଅଁ, ଶୁଣ୍ଠୀ, ଏହିସବୁର କ୍ୱାଥକର ପାନକଲେ ଶୂଳସଂଯୁକ୍ତ ବାତ-ଜ୍ୱର, ଗ୍ରହଣୀ ରୋଗ ଭଲ ହୁଏ ।



## ଶୋଥ ରୋଗର ପାଚନ

ସ୍ୱଳ୍ପ ପଞ୍ଚମୂଳ ପାଚନ—ଶାଳପର୍ଣ୍ଣି; କୃଷ୍ଣପର୍ଣ୍ଣି, ନବାଙ୍କୁଡ଼, ଅଙ୍କରାନ୍ତି, ଗୋଖୁର ବା ଶୁଣ୍ଠ୍ୟାଦି ପାଚନ—ଶୁଣ୍ଠୀ, ପୁରୁଣୀ, ଦେମୂଳ ଏହି କ୍ୱାଥକରି ସେବନ କଲେ ବାଯୁ ଦୋଷଜ ଶୋଥ ଭଲହୁଏ ।

ପୁନର୍ନବାଷ୍ଟକ କ୍ୱାଥ—ପୁରୁଣୀ, ନିମ୍ବଛେଲି, ପଟୋଳପତ୍ର,ଶୁଣ୍ଠି, କଟୁକୀ, ଗୁଳୁଚି, ଦେବଦାରୁ, ହରଡ଼ା, ଏହାର କ୍ୱାଥ କିମ୍ବା ନତେତ୍ର ଦଶମୂଳ ପାଚନ ସେବନ କଲେ ସମସ୍ତ ଶୋଥ, ବିଶେଷତଃ ବାତଜ ଶୋଥ ଭଲ ହୁଏ ।



## ଅର୍ଶ ରୋଗରେ ପାଚନ

ଚନ୍ଦନାଦି କ୍ୱାଥ—ରକ୍ତଚନ୍ଦନ, ଚିରେଇତା, ଦୁରାଲଭା, ନାଗର ମୁଥା, ଦାରୁହଳଦୀ, ତାଳଚାନ୍ଦ, ବେଣାମୂଳ, ନିମଛେଲି ଏହାର କ୍ୱାଥ କରି ସେବନ କଲେ ରକ୍ତାର୍ଶ ନିବାରିତ ହୁଏ ।

ପଥ୍ୟାମୃତାଦ୍ୟ ପାଚନ—ହରିତକି, ଧନିଆଁ, ଗୁଳୁଚି, ଏହାର କ୍ୱାଥ ଗୁଡ଼ସହ ସେବନୀୟ । ପୁରାତନ ଜ୍ୱରରେ ବୁଧ ଯେ ରୂପ ଉପ-କାରୀ ତଦ୍ରୂପ ଅର୍ଶ ରୋଗରେ ଏହା ଉପକାରୀ ।

## ପାଣ୍ଡୁ ରୋଗ ପାଚନ

ଫଳତ୍ରିକାଦ ପାଚନ—ତ୍ରିଫଳା କଟୁକୀ, ଗୁଳୁଚି, ବାସଙ୍ଗ, ଚିରାଇତା ଓ ନିମ୍ବଛେଲି ଏ କ୍ୱାଥରେ ମହୁ ପରକ୍ଷେପ ଦେଇ ସେବନ କଲେ କାମଳା ଓ ପାଣ୍ଡୁ ରୋଗ ଯାଏ ।

ପୁନର୍ଣ୍ଣ ବାଦ୍ୟ କ୍ୱାଥ—ପୁନର୍ଣ୍ଣବା, ହରିଡ଼ା, ନିମଛେଲି, ଦାରୁ-ହଳଦୀ, ଚିରାଇତା, ପଟୋଳ, ଗୁଳୁଚି ଓ ଶୁଣ୍ଠୀ ଏହି କ୍ୱାଥକୁ ଗୋମୂତ୍ର ପରକ୍ଷ ଦେଇ ପାନକଲେ ପାଣ୍ଡୁ; କାସ, ଉଦର ରୋଗ ଶ୍ୱାସ,ଶୂଳ, ସର୍ବାଙ୍ଗ ଶୋଥ ଓ ନାନାବିଧ ରୋଗ ନାଶ ହୁଏ ।

ଖଦିର କଷାୟ—ଖଇରର କ୍ୱାଥରେ ଲୌହଭସ୍ମ ଓ ମୁଥାଚୂର୍ଣ୍ଣ ଦେଇ ସେବନ କଲେ ହଳିମକ ରୋଗ ନାଶ ହୁଏ ।

## ଅଗ୍ନିମାନ୍ଦ୍ୟ ପାଚନ

ହରିତକ୍ୟାଦି ପାଚନ—ହରିଡ଼ା ଓ ପିପଳ କାଞ୍ଜିପାଣିରେ ସିଦ୍ଧ-କରି ତହିଁରେ ଲବଣ ପକାଇଦେଇ ପାନକଲେ ଅଜୀର୍ଣ୍ଣାଦି ଭଲ-ହୁଏ ।

ଧନ୍ୱାଦି କ୍ୱାଥ—ଶୁଣ୍ଠୀ, ହରିଡ଼ା ଓ ଗୁଳୁଚି ଏହାର କ୍ୱାଥରେ ପିପଳି, ଗୁଳିକାଠ, ରକ୍ତଚିତାମୂଳ, ଶୁଣ୍ଠୀ ଓ ମରିଚଚୂର୍ଣ୍ଣ ପକାଇଦେଇ ଡାଇଟନି ଓ ତେଜପତ୍ର ଦ୍ୱାରା ସୁଗନ୍ଧି କରି ପାନ କଲେ କଫଜ ଅଗ୍ନିମାନ୍ଦ୍ୟ ଅନୁଗ୍ରହ ହୁଏ ।

ପଞ୍ଚଯୋଗ କ୍ୱାଥ—(୧) କଟାମଂସି କ୍ୱାଥ ପ୍ରସ୍ତୁତକରି ପାନକଲେ ଶୂଳ ଓ ବିସୂଚିକା ଆରୋଗ୍ୟ ହୁଏ । (୨) କର୍ଲୀବା ସର୍ଲୀ ପତ୍ର କ୍ୱାଥରେ ତିଳତେଲ ପରକ୍ଷଦେଇ ପାନକଲେ ବିସୂଚିକା ଭଲ ହୁଏ ।

(୩) ଶରମୂଳ, ବାଳମୂଳର ପ୍ରସ୍ତୁତ କ୍ୱାଥରେ ପିପଳୀଚୂର୍ଣ୍ଣ ପରକ୍ଷ ଦେଇ ପାନକଲେ ବିସୂଚିକା ଓ ଜଠରାଗ୍ନି ବୃଦ୍ଧିହୁଏ ।(୪)ବେଲଶୁଣ୍ଠୀ କ୍ୱାଥ ସେବନ କଲେ ବମି ଓ ବିସୂଚିକା ଭଲ ହୁଏ । ବେଲଶୁଣ୍ଠୀ, ଶୁଣ୍ଠୀ କଟ୍‌ଫଳ ପ୍ରସ୍ତୁତ କ୍ୱାଥରେ ବମି ଓ ବିସୂଚିକା ଆରୋଗ୍ୟ ହୁଏ ।

ଧାନ୍ୟ ନାଗରମ କ୍ୱାଥ—ଧନିଆଁ ଓ ଶୁଣ୍ଠୀ କ୍ୱାଥ ସେବନ କଲେ ଆମ ଜନ୍ୟ ଅଜୀର୍ଣ୍ଣ ଓ ଶୂଳ ଆରୋଗ୍ୟ ହୁଏ ଓ ମୂତ୍ରାଶୟର ନାନାବିଧ ଦୋଷ ଶୋଧିତ ହୁଏ ।

ବିମ୍ବାଦ କ୍ୱାଥ—ବିମ୍ବଛେଲି, ମୁଥା, ଅମ୍ଳବେତସ, ହଳଦୀ, ଗମ୍ଭାରି, ତୁଳସୀ ଓ ନବାଙ୍କୁଡ଼ୀ ଏହାର କ୍ୱାଥ ସେବନ କଲେ ହୃଦ୍ରୋଗ, କଫ, ଶୂଳ, ଯକୃତ୍ ମୂତ୍ରରୋଗ ପ୍ରଭୃତି ଅରୋଗ୍ୟ ହୁଏ ।

---

## ରକ୍ତପିତ୍ତ ପାଚନ

ହ୍ରୀବେରାଦ ପାଚନ—କୁଟୁବେଲ, ନୀଳୋତ୍ପଳ, ଧନିଆଁ ରକ୍ତ-ଚନ୍ଦନ, ଯଷ୍ଟିମଧୁ, ଗୁଡ଼ୁଚି, ବେଣାଚେର ଓ ଭଦ୍ରୁଡ଼ୀମୂଳ ଏହି ସବୁର କ୍ୱଥରେ ଚିନି ଓ ମହୁ ପରକ୍ଷଦେଇ ପାନକଲେ ରକ୍ତପିତ୍ତ ଜ୍ୱର ତୃଷ୍ଣା ଓ ଦାହ ଉପଦ୍ରବ ନାଶ କରେ ।

ଧାନ୍ୟାଦାଦ ଶୀତକଷାୟ—ଧନିଆଁ, ଅଁଳା, ବାସଙ୍ଗ, କିସ୍‌ମିସ୍ ଓ ଘରପୋଢ଼ଅ ଏହି ସମସ୍ତ ଦ୍ରବ୍ୟର ଶୀତକଷାୟ ବ୍ୟବସ୍ଥା କରିବ

ଅଟରୁଷାଦ କଷାୟ—ବାସଙ୍ଗ ମୂଳ ଛେଲି, କିସ୍‌ମିସ୍ ଓ ହରଡ଼ା ଏହି କ୍ୱାଥରେ ଚିନି ଓ ମହୁ ପରକ୍ଷଦେଇ ପାନକଲେ ରକ୍ତ ପିତ୍ତର କାସ ଓ ଶ୍ୱାସ ଉପଦ୍ରବ ନାଶ କରେ ।

ବସକୋକ କ୍ୱାଥ—କେବଳ ବାସଙ୍ଗର କ୍ୱାଥରେ ମହୁ ପରକ୍ଷ ଦେଇ ସେବନ କଲେ ରକ୍ତପିତ୍ତ, କ୍ଷୟ୍ର କାସ ଓ ପିତ୍ତ ଶ୍ଳୈଷ୍ମିକଜ୍ୱର ଭଲ ହୁଏ ।

—(*)—

## କୃମି ରୋଗର ପାଚନ

ମୁସ୍ତାଦ୍ୟ ପାଚନ—ମୁଥା, ମୂଷାକାନ୍ନି ପତ୍ର, ତ୍ରିଫଳା, ସଜନାଛେଲି ଓ ଦେବଦାରୁ ଏହାର କ୍ୱାଥରେ ପିପଳୀ ଓ ବିଡ଼ଙ୍ଗ ଚୂର୍ଣ୍ଣ ପକ୍ଷେପ ଦେଇ ପାନ କଲେ ବହୁକାଳୋତ୍ପନ୍ନ କୃମି ଓ କୃମିଜ ସକଳ ପ୍ରକାର ରୋଗ ଆରୋଗ୍ୟ ହୁଏ ।



## ଯକ୍ଷ୍ମା, କାସ, ଶ୍ୱାସ, ହିକ୍କା ଓ ହୃଦରୋଗ ପାଚନ

ଅଶ୍ୱଗନ୍ଧାଦ୍ୟ ପାଚନ—ଅଶ୍ୱଗନ୍ଧା, ଗୁଳୁଚି, ଛତୁଅରି, ଦଶମୂଳ, ବେଡ଼େଲା (ବାଡ଼ିଅଁଳା), ବାସଙ୍ଗ, କୁଡ଼ ଓ ଅତେଇସୀ, ଏହାର କ୍ୱାଥ କରି ପାନକଲେ ପରେ ଦୁଗ୍ଧ ଏବଂ ମାଂସ ରସ ପାନକଲେ କ୍ଷୟ ରୋଗ ନାଶ ହୁଏ ।

ବଲାଦ୍ୟ ପାଚନ—ବେଡ଼େଲା (ବଜ୍ରମୂଳୀ), ନବାଙ୍କୁଡ଼ି, କଣ୍ଟାକାରି କସ୍ତୁରି ଏହାର କ୍ୱାଥ କରି ଚିନି ଏବଂ ମହୁ ପକ୍ଷେପଦେଇ ପାନ କଲେ ପୈତ୍ତିକ କାସ ରୋଗ ଭଲ ହୁଏ ।

ପର୍ଣ୍ଣାଶ ପଞ୍ଚକ ପାଚନ—ଗୁଳୁଚି, ଶୁଣ୍ଠୀ, ବ୍ରାହ୍ମଣହାଣ୍ଡିଅ ମୂଳ, ଅଙ୍କରନ୍ତି ଓ ତୁଳସୀ ଏହାର କ୍ୱାଥରେ ପିପଳୀ ଚୂର୍ଣ୍ଣ ପକ୍ଷେପଦେଇ ପାନ କଲେ କାସ ଏବଂ ଶ୍ୱାସ ଭଲ ହୁଏ ।

କଣ୍ଟକାର୍ଯ୍ୟାଦ୍ୟ ପାଚନ—ଅଙ୍କରନ୍ତି, ନବାଙ୍କୁଡ଼ି, କସ୍ତୁରି, ବାସଙ୍ଗ, କର୍ପୂର, କୁରୁବେଲ, ଶୁଣ୍ଠୀ, ପିପଳୀ, ଏହାର କ୍ୱାଥରେ ଶର୍କରା ଏବଂ ମହୁ ଦେଇ ପାନ କଲେ ପୈତ୍ତିକ କାସ ଭଲ ହୁଏ ।

ରାସ୍ନାଦ୍ୟ ପାଚନ—ରାସ୍ନା, ଦଶମୂଳ, ଗନ୍ଧଶୁଣ୍ଠୀ, ପିପଳୀ, ଶୁଣ୍ଠୀ, କୁଡ଼, କଙ୍କଡ଼ାଶୃଙ୍ଗୀ, ଭୂଇଁଅଁଳା, ବ୍ରାହ୍ମଣହାଣ୍ଡିଅମୂଳ, ଗୁଳୁଚି, ଶୁଣ୍ଠୀ, ଶତାମୂଳ ଏହୁ କ୍ୱାଥ ପାନ କଲେ ଶ୍ୱାସ, ହୃଦବେଦନା, ପାର୍ଶ୍ୱ-ବେଦନା ହିକ୍କା ଏବଂ କାସ ଭଲ ହୁଏ ।

ବାସାଦ ଷୁଦ୍ରାଦ ପାଚନ—ବାସଙ୍ଗ, ଅଙ୍କଗନ୍ତ, ଗୁଳୁଚି, ଅଥବା ଅଙ୍କଗନ୍ତ, ଗୁଳୁଚିର କ୍ୱାଥ କରି ମହୁ ବା ପିପଳୀ ଚୂର୍ଣ୍ଣ ପରଖ ଦେଇ ପାନକଲେ ଜ୍ୱର ଏବଂ କାସ ଭଲ ହୁଏ ।

ନାଗର କ୍ୱାଥ—ଯଥାବତ୍ ପ୍ରସ୍ତୁତ ଶୁଣ୍ଠିର ଜଣ୍ଠ କ୍ୱାଥ ପାନ କଲେ ଶୂଳ, କାସ, ଓ ଶ୍ୱାସ, ବାୟୁଶୂଳ ଓ ହୃଦ୍ରୋଗ ପ୍ରଭୃତି ଭଲହୁଏ ।

ତ୍ରୟୋଦଶାଙ୍ଗ ପାଚନ—ଦଶମୂଳ, ଧନିଆଁ, ପିପଳୀ ଓ ଶୁଣ୍ଠି, ଏହି ତେର ଗୋଟି ଦ୍ରବ୍ୟର କ୍ୱାଥ ବ୍ୟବସ୍ଥା କଲେ ପାର୍ଶ୍ୱ ବେଦନା, ଜ୍ୱର, ଶ୍ୱାସ ଓ ପୀନସାଦ ଉପଦ୍ରବ ନିବାରଣ ହୁଏ ।

ଦଶମୂଳ ପାଚନ—ଦଶମୂଳ, ବାଡ଼ଅଁଳା, ରସ୍ନା, କୁଡ଼,ଦେବ-ଦାରୁ ଓ ଶୁଣ୍ଠି ଏହି ପନର ଗୋଟି ଦ୍ରବ୍ୟର କ୍ୱାଥ ପିଇବାକୁ ଦେବ । ଏଥିରେ ପାର୍ଶ୍ୱଶୂଳ, ସନ୍ଧିଶୂଳ ଶିରଃଶୂଳ, କ୍ଷୟ ଓ କାସାଦ ଉପଦ୍ରବ ପ୍ରଶମିତ ହୁଏ ।

---

## ବାତବ୍ୟାଧି ପାଚନ

ମାଷବାଳାଦ ପାଚନ—ନବାହ୍ନି, ବାଡ଼ଅଁଳା, ବାଇଡ଼ଙ୍କମଞ୍ଜି, କପୁରି, ରିସ୍ନା, ଅଶ୍ୱଗନ୍ଧା ଓ ଗବମୂଳ ଏହି କ୍ୱାଥରେ ୨୫ ମଷା ହିଙ୍ଗୁ ସୈନ୍ଧବ ଚୂର୍ଣ୍ଣ ପରଖଦେଇ ଗରମ ଥାଉଁ ସେବନ କଲେ ପକ୍ଷାଘାତ ବାତବ୍ୟାଧି ଆରୋଗ୍ୟ ହୁଏ ।

ଶେଫାଳିକା କ୍ୱାଥ—ସିଜଳା ପତ୍ରର ପ୍ରସ୍ତୁତ କ୍ୱାଥ ପାନକଲେ ଗୃଧ୍ରନାଶକ ବାତ ବ୍ୟାଧି ଭଲ ହୁଏ ।

ରସ୍ନା ସପ୍ତକ କ୍ୱାଥ—ରସ୍ନା, ଗୁଳୁଚି, ସୁନାଗିଅଠା, ଦେବ-ଦାରୁ, ଗୋକ୍ଷୁର, ଗବମୂଳ ଓ ପୁନର୍ଣ୍ଣବା ଏହାର କ୍ୱାଥରେ ଶୁଣ୍ଠି ପରଖଦେଇ ପାନକଲେ ଜଙ୍ଘ, ଉରୁ, ପୃଷ୍ଠ ଓ କଟିଆଦ ସ୍ଥାନର ଶୂଳ ରୋଗ ଭଲ ହୁଏ ।

ଭୂତଭାଦ କ୍ୱାଥ—ଯୁଆଣୀ, ହରିଡ଼ା, ଶୁଣ୍ଠୀ ଓ ପୁଷ୍କରମୂଳ କମ୍ବା ବେଲମୂଳ, ଗୁଡ଼ୁଚି, ଦେବଦାରୁ ଓ ଶୁଣ୍ଠୀ ଅଥବା ବଚ, ଅତୋସୀ, ପିପଳୀ ଓ ବିଟଲବଣ ଏହି ତିନିଟିରୁ ଯେ କୌଣସି ଗୋଟିଏ ପ୍ରସ୍ତୁତ କ୍ୱାଥ ପାନକଲେ ଆମ ସଂଯୁକ୍ତ ଯେ କୌଣସି ବାତ ରୋଗ ହେଉ ଶୀଘ୍ର ନିବାରିତ ହୁଏ ।

ପୁନର୍ଣ୍ଣବାଦ୍ୟ ପାଚନ—ପୁନର୍ଣ୍ଣବା, ରାସ୍ନା, ଶୁଣ୍ଠୀ, ଗୁଡ଼ୁଚି ଓ ଗବମୂଳ—ଏହାର କ୍ୱାଥ ପାନକଲେ ସପ୍ତଧାତୁ ସପ୍ତସର୍ବାଙ୍ଗିକ ଆମ-ବାତ ଭଲ ହୁଏ ।

ଗୋକ୍ଷୁରାଦ୍ୟ ପାଚନ—ଗୋକ୍ଷୁର, ଗବମୂଳ, ବଚ ଓ ପୁନର୍ଣ୍ଣବା କ୍ୱାଥ କରି ପାନକଲେ ନିଶ୍ଚୟ ସର୍ବାଙ୍ଗର ବାତରୋଗ ଭଲ ହୁଏ ।

ଦଶମୂଳାଦ୍ୟ ପାଚନ—ଦଶମୂଳ, ବାଡ଼ିଅଁଳା, ରାସ୍ନା, ଗୁଡ଼ୁଚି ଏବଂ ଶୁଣ୍ଠୀ ଏହି ଚଉଦ ଗୋଟିର କ୍ୱାଥ କରି ଜଡ଼ାତେଲ ପଚଶ ଦେଇ ପିଇଲେ ଗୃଧ୍ରସୀ, ଖଞ୍ଜ, ଜଙ୍ଘାସ୍ଥ ଖଞ୍ଜ ଏବଂ ପଙ୍ଗୁରୋଗ ପ୍ରଶମିତ ହୁଏ ।

ସାମାନ୍ୟ ପଥ୍ୟ—ପିପଳୀ, ପିପଳା ମୂଳ, ଗୁଇଁକାଠ, ଚିତ୍ରାମୂଳ ଓ ଶୁଣ୍ଠୀ ଏହି ଦ୍ରବ୍ୟରୁ ଦୁଇତୋଳା ନେଇ ଗୃହ-ସେର ଜଳ ସହିତ ସିଦ୍ଧ କରିବ, ଅବଶିଷ୍ଟ ଦୁଇସେର ଥିବ ଓହ୍ଲାଇ ଛାଣିକରି ରଖିଥିବ, ରୋଗୀକୁ ଦେବାବେଳେ ଅଳ୍ପ ଅଳ୍ପ ଗ୍ରହଣ କରିବ । ଜଳ୍ପ ଜଳ ପିପାସା ଶାନ୍ତକରେ ।

—(*)—

## ବାତରକ୍ତ ପାଚନ

ପଟୋଳାଦ ପାଚନ—ପଟୋଳ, କଟୁକୀ, ଗଜମୂଳ, ହରଡ଼ା, ବାହାଡ଼ା, ଅଁଳା ଓ ଗୁଡ଼ୁଚି ଏହାର କ୍ୱାଥ ପାନକଲେ ଦାହଯୁକ୍ତ ବାତରକ୍ତ ଭଲ ହୁଏ ।

ମଞ୍ଜିଷ୍ଠାଦି ପାଚନ—ମଞ୍ଜିଷ୍ଠା, ତ୍ରିଫଳା, ନିମଛେଲି, ବଚ, କଟୁକୀ, ଗୁଡ଼ୁଚି, ଦାରୁହଳଦି ଏହାର କ୍ୱାଥ ପାନ କଲେ ବାତରକ୍ତ ଏବଂ କୁଷ୍ଠାଦି ନାନାବିଧ ରୋଗ ଭଲ ହୁଏ ।

ତ୍ରିବୃତାଦ୍ୟ ପାଚନ—ତହୁଡ଼ି, ଭୂଇଁକଖାରୁ ଗୋଖରୀ ଏହାର କ୍ୱାଥ ପାନକଲେ ବାତରକ୍ତାଦି ରୋଗ ଭଲ ହୁଏ ।

—※—

## ଆମବାତ ପାଚନ

ଶୁଣ୍ଠ୍ୟାଦି ପାଚନ—ଚଇଶୁଣ୍ଠୀ, ଶୁଣ୍ଠୀ, ହରିଡ଼ା, ବଚ ଦେବଦାରୁ ଅତୋସୀ ଓ ଗୁଡ଼ୁଚି ଏହାର କ୍ୱାଥ ପାନକଲେ ଆମବାତ ଭଲ ହୁଏ, ରୁକ୍ଷ ଦ୍ରବ୍ୟ ଆହାର କରିବା ଉଚିତ ।

ରାସ୍ନାଦିଦଶମୂଳ—ଦଶମୂଳ, ଗୁଡ଼ୁଚି, ଏରଣ୍ଡମୂଳ, ରାସ୍ନା, ଶୁଣ୍ଠୀ ଓ ଦେବଦାରୁ ଏହାର କ୍ୱାଥ ଜଡ଼ାତେଲ ସହିତ ପାନକଲେ ଆମବାତ ନଷ୍ଟ ହୁଏ ।

ରାସ୍ନା ପଞ୍ଚକ—ରାସ୍ନା, ଗୁଡୁଚି, ଏରଣ୍ଡମୂଳ, ଦେବଦାରୁ ଓ ଶୁଣ୍ଠୀ, ଏହାର କ୍ୱାଥ ପାନକଲେ ସର୍ବାଙ୍ଗାଶ୍ରିତ ଆମବାତ ଭଲ ହୁଏ ।

ଗୋକ୍ଷୁରାଦି କଷାୟ—ଗୋକ୍ଷୁର, ଶୁଣ୍ଠୀର ପ୍ରସ୍ତୁତ କ୍ୱାଥ ପାନକଲେ ଆମବାତ ଭଲ ହୁଏ ।

ଏରଣ୍ଡାଦି କ୍ୱାଥ—ଏରଣ୍ଡମୂଳ, ଗୋକ୍ଷୁରମଞ୍ଜି, ରାସ୍ନା, ଶତପ, ପୁନର୍ଣ୍ଣବାମୂଳ, ଏହାର କ୍ୱାଥ ପାନ କଲେ ଆମବାତ ଭଲହୁଏ । ଦଶମୂଳ କ୍ୱାଥରେ ଜଡ଼ାତେଲ ଦେଇ ଖାଇବାକୁ ଦେଲେ ପେଟର ଶୂଳ, ବସ୍ତିଶୂଳ ଓ କଟୀଶୂଳ ଯାଏ ।

———

## ଶୂଳରୋଗ ପାଚନ

ବଳାଦି ପାଚନ—ବେଡ଼େଲ (ବାଡ଼ଅଁଳା), ପୁନର୍ଣବା, ଏରଣ୍ଡମୂଳ ନଟାବେଙ୍କୋଳି, ଅଙ୍କରାନ୍ତି ଓ ଗୋଖରୀ, ଏହି କ୍ୱାଥରେ ହିଙ୍ଗୁ ଓ

ସୌବର୍ଚ୍ଚଳ ଲବଣଚୂର୍ଣ୍ଣ ପ୍ରକ୍ଷେପ ଦେଇ ପାନକଲେ ବାତପ୍ରଧାନ ଶୂଳ ରୋଗ ଭଲ ହୁଏ ।

ବିଶ୍ୱାଦ ପାଚନ—ଶୁଣ୍ଠୀ, ଗବମୂଳର କ୍ୱାଥରେ ହିଙ୍ଗୁ ଏବଂ ସଚଳଲବଣ ପରକ୍ଷେ ଦେଇ ପାନକଲେ ବାଇଶୂଳ ରୋଗ ଭଲହୁଏ ।

ଦ୍ରାକ୍ଷାକ୍ୱାଥ—କସ୍‌ମିସ କ୍ୱାଥରେ ଶର୍କରା (ଚିନି) ପରକ୍ଷେ ଦେଇ ପାନକଲେ ପିତ୍ତଶୂଳ ନଷ୍ଟ ହୁଏ ।

ତ୍ରିଫଳାଦ ପାଚନ—ତ୍ରିଫଳା, ସୁନାରି ଯଥାବତ ପ୍ରସ୍ତୁତ କ୍ୱାଥରେ ମଧୁ ଚିନି ପରକ୍ଷେ ଦେଇ ପାନକଲେ ରକ୍ତପିତ୍ତ ଦାହ ଏବଂ ନାନାବିଧ ଶୂଳ ଭଲ ହୁଏ ।

ବିଲ୍ୱାଦ ପାଚନ—ବେଲମୂଳ, ଏରଣ୍ଡମୂଳ, (ଗବ) ରକ୍ତଚିତା ମୂଳ, ଶୁଣ୍ଠୀ ଏହାର କ୍ୱାଥ ହିଙ୍ଗୁ ଏବଂ ସୈନ୍ଧବଲବଣ ପରକ୍ଷ ଦେଇ ପାନକଲେ ସର୍ବଶୂଳ ରୋଗ ଭଲ ହୁଏ ।

ପଟୋଲାଦ ପାଚନ—ପଟୋଳ, ତ୍ରିଫଳା, ନିମ୍ବଛେଲି ଏହି କ୍ୱାଥରେ ମଧୁ ପରକ୍ଷ ଦେଇ ସେବନ କଲେ ପିତ୍ତଶ୍ଳେଷ୍ମା ଜ୍ୱର ବମି, ଦାହ ଏବଂ ଶୂଳରୋଗ ନାଶକରେ ।

ଦଶମୂଳ ପାଚନ—ଦଶମୂଳ କ୍ୱାଥ, ଯବକ୍ଷାର (ସୋରା) ଓ ସୈନ୍ଧବ ସହ ସେବନ କଲେ ନାନାବିଧ ହୃଦ୍‌ରୋଗ, ଗୁଳ୍ମ, ଶୂଳ, ଶ୍ୱାସ ରୋଗ ଭଲ ହୁଏ ।

—o—

## ଉଦାବର୍ତ୍ତ ଗୁଳ୍ମ ପାଚନ

ଜମ୍ବୀରକ୍ୱାଥ—ଅର୍ଜୁନଛେଲିର କ୍ୱାଥ ପାନକଲେ ଉଦାବର୍ତ୍ତ ନଷ୍ଟ ହୁଏ ।

ତିଳକ୍ୱାଥ—ତିଳ (ରାଶି) କ୍ୱାଥରେ ଗୁଡ଼, ତ୍ରିକଟୁ, ହିଙ୍ଗୁ ଏବଂ ବ୍ରାହ୍ମଣଯଷ୍ଟିଆ ଚୂର୍ଣ୍ଣ ପରକ୍ଷଦେଇ ପାନକଲେ ସ୍ତ୍ରୀମାନଙ୍କ ରକ୍ତଗୁଳ୍ମ ବିନଷ୍ଟ ହୁଏ ।

ପଥ୍ୟାଦି ପାଚନ—ହରିଡ଼ା, ମଞ୍ଜିଷ୍ଠା, କୃଷ୍ଣପର୍ଣ୍ଣି, ବାସଙ୍ଗ, ଶୁଣ୍ଠୀ, ଅଟେଢାସୀ ଏବଂ ଦେବଦାରୁ ଏହାର କ୍ୱାଥ ପାନକଲେ ଗୁଳ୍ମରୋଗୀର ପରିପାକ ଶକ୍ତି ବର୍ଦ୍ଧିତ ହୁଏ ।

ବଚ୍ଚାଦି ପାଚନ—ବଚ, ଯୁଆଣି, ହିଙ୍ଗୁ ଏବଂ ଦଶମୂଳ ଏହାର କ୍ୱାଥ ଗରମ ଗରମ ପାନ କରିଲେ ବାତଜଗୁଳ୍ମ ଓ ସକଳ ପ୍ରକାର ଜ୍ୱର ବିନଷ୍ଟ ହୁଏ ।

ଯମନ୍ୟାଦି ପାଚନ—ଯୁଆଣି, ବଚ ଓ ହିଙ୍ଗୁ ଏହାର ଉଷ୍ଣ କ୍ୱାଥ ସକାଳେ ପାନକଲେ ଶ୍ଲେଷ୍ମିକ ଗୁଳ୍ମ ରୋଗ ଭଲ ହୁଏ ।

---

## ପ୍ରମେହ, ମୂତ୍ରକୃଚ୍ଛ୍ର ଓ ମୂତ୍ରଘାତାସ୍ମରୀ ପାଚନ

ଚତୁଃକ୍ୱାଥ—(୧) ଲୋଧ, ଅର୍ଜୁନ, ବେଣାମୂଳ ଓ ରକ୍ତଚନ୍ଦନ (୨) ନିମ୍ବ, ବେଣାଚେର ଓ ଅଁଳା (୩) ହରିଡ଼ା, ଅଁଳା, ଅର୍ଜୁନ, ନିମ୍ବ ଓ ପିତାକୋରୁଅ (୪) ମାଳୋପୂଳ, ଅଳାଇଚ, ଉଳଣ ଓ ଅର୍ଜୁନ, ଏହି ଚାରି କ୍ୱାଥରେ କୌଣସି ଗୋଟିକରେ ମହୁ ପରଖ ଦେଇ ପାନକଲେ ନାନାବିଧ ପୈତ୍ତିକ ମେହ ନଷ୍ଟ ହୁଏ ।

ଖଦିରାଦି ପାଚନ—ବାଉ ଖଦିର, ଖଦିର ଓ ଡୁଆଛେଲି କ୍ୱାଥକୁ ପାନକଲେ କ୍ଷୌଦ୍ରମେହ ଓ ଗଣିଆରି (ଅଗିବଥୁ) ର କ୍ୱାଥରେ ବସ ମେହ ଭଲ ହୁଏ ।

ଧାତ୍ର୍ୟାଦି ପାନେ—ଅଁଳା, କସ୍ ମିସ୍, ଭୁଇଁକଖାରୁ, ଯାଷ୍ଟିମଧୁ ଓ ଗୋକ୍ଷୁରମଞ୍ଜି ପ୍ରତ୍ୟେକ ସମାନ ଅଂଶେ ମିଳିତ ୨ତୋଳାର କ୍ୱାଥକର ଶୀତଳ ହେଲେ ଚିନି ଅଧତୋଳାର ପରଖଦେଇ ସେବନ କଲେ କଷ୍ଟ ମୂତ୍ରକୃଚ୍ଛ୍ର ରୋଗ ଭଲ ହୁଏ ।

ବୃହଦ୍ଧାତ୍ର୍ୟାଦି ପାଚନ—ଅଁଳା, କସ୍ମିସ୍, ଯାଷ୍ଟିମଧୁ, ଭୁଇଁକଖାରୁ, ଗୋକ୍ଷୁରମଞ୍ଜି, କୁଶମୂଳ, କଳାଆଖୁମୂଳ ଓ ହରିଡ଼ା ପ୍ରତ୍ୟେକର ସମାନ-ଅଂଶେ ତୋ୨ଳାର କ୍ୱାଥକର ଅର୍ଦ୍ଧତୋଳା ଚିନି ପରିଖ ଦେଇ ଦୁଇ

ଉକ୍ତ ଅଥବା ଏ କ୍ୱାଥ ପାନକଲେ ମୂତ୍ରକୃଚ୍ଛ୍ର ଓ ମୋହାଦି ନାନାବିଧ ଉପସର୍ଗ ଅପଗମ ହୁଏ ।

ପଞ୍ଚତୃଣମୂଳ କ୍ୱାଥ—କୁଶ, କାଶ, ଶର, ଅଣଖୁଆ ଓ ଲାଲ ଅଖୁ ଏହି ସମସ୍ତ ତୃଣମୂଳର ପାଚନ ପିଇଲେ ପିତ୍ତଜନିତ ମୂତ୍ରକୃଚ୍ଛ୍ର ପ୍ରଶମିତ ହୁଏ ଓ ଏହି ପଞ୍ଚତୃଣମୂଳ ସହିତରେ ଦୁଧକୁ ସିଝାଇ ପିଇଲେ ଲିଙ୍ଗର ରକ୍ତସ୍ରାବ ଭଲ ହୁଏ ।

କ୍ୱାଥତ୍ରୟ—(୧)ଦାରୁହଳଦୀ, ଯାଷ୍ଟିମଧୁ ତ୍ରିଫଳା ଓ ଶତାମୂଳ (୨) ତ୍ରିଫଳା, ଦେବଦାରୁ, ଦାରୁହଳଦୀ ଓ ମୁଥା (୩) ଚିତାକୋରୁଅ ଛେଲି, ପୀତାଖାଇ (ଅଣସନ), ଦାରୁହଳଦୀ, ମୁଥା ଓ ତ୍ରିଫଳା ଏହି କ୍ୱାଥ ମହୁ ସହିତ ସେବନ କଲେ ସକଳପ୍ରକାର ମେହ ଭଲ ହୁଏ ।

ଅମୃତାଦି ପାଚନ—ଗୁଡ଼ୁଚି, ଶୁଣ୍ଠୀ, ଅଁଳା ଅଶ୍ୱଗନ୍ଧା ଓ ଗୋକ୍ଷୁର ଏହି କ୍ୱାଥ ପାନକଲେ ବାତରୋଗ ଓ ଶୂଳଯୁକ୍ତ ମୂତ୍ରକୃଚ୍ଛ୍ର ରୋଗ ନଷ୍ଟ ହୁଏ ।

ଶତାବରୀ ଆଦି ପାଚନ—ଶତମୂଳୀ, କୁଶ, କାଶ, ଗୋକ୍ଷୁର, ଭୂଇଁକଖାରୁ, ଶାଳୀଧାନମୂଳ, ଅଖୁ ଓ କଶେରୁ—ଏହାର କ୍ୱାଥ ମହୁ ଓ ଚିନି ସହିତ ପାନକଲେ ପୈତ୍ତିକ ମୂତ୍ରକୃଚ୍ଛ୍ର ରୋଗ ଭଲ ହୁଏ ।

ବରୁଣାଦି ପାଚନ—ବରୁଣଛେଲି, ଶୁଣ୍ଠୀ, ଓ ଗୋକ୍ଷୁର ଏହାର କ୍ୱାଥକୁ ୨ମଷା ଯବକ୍ଷାର ଓ ପୁରୁଣା ଗୁଡ଼ ୨ମଶା ସହ ପାନ କଲେ ବହୁକାଳ ଜାତ ବାତଜ ଅଶ୍ମରୀ ଭଲ ହୁଏ ।

ବୃହଦ୍‌ବରୁଣାଦି କ୍ୱାଥ—ବରୁଣଛେଲି, ଶୁଣ୍ଠୀ, ଗୋକ୍ଷୁରମଞ୍ଜି, ତାଳମୂଳୀ, ବ୍ରହ୍ମି ଓ କୁଶାଦି ପଞ୍ଚତୃଣର ମୂଳ ଏହିସବୁ ପଦାର୍ଥର କ୍ୱାଥରେ ଚିନି ୨ମଷା ଓ ଯବକ୍ଷାର ୨ମଷା ପକାଇଦେଇ ପିଇଲେ ଅଶ୍ମରୀ ମୂତ୍ରକୃଚ୍ଛ୍ର ଓ ଲିଙ୍ଗଶୂଳ ନିବାରିତ ହୁଏ ।

---

## ଉପଦଂଶ ବା ଗରମି ପାଚନ

ନିମ୍ବାଦି ପାଚନ—ନିମ୍ବ, ଅର୍ଜୁନ, ଅଶ୍ୱତ୍ଥ, କଦମ୍ବ, ଶାଳ, ଜାମ୍ବୁ, ଯଜ୍ଞଡ଼ୁମ୍ବର ଓ ବେତସ ଏହି ଆଠଗୋଟି ଛେଲିର ଚୂର୍ଣ୍ଣ ବା କ୍ୱାଥ ଅଥବା ଘିଅରେ ପାକକରି ପ୍ରଲେପ ଦେଲେ ରକ୍ତପିତ୍ତ ଜନିତ ଉପଦଂଶ ଭଲ ହୁଏ ।

---

## କୁଷ୍ଠ-ଅମ୍ଳପିତ୍ତ ପାଚନ

ପଟୋଳାଦି ପାଚନ—ପଟୋଳ, ଖଦିର, ନିମ୍ବଛେଲି, ତ୍ରିଫଳା ଓ କୃଷ୍ଣବେତସ ଏହାର କ୍ୱାଥ ଏବଂ ତିକ୍ତରସ ପ୍ରଧାନଦ୍ରବ୍ୟ ମାନଙ୍କରେ ସେବନ କଲେ କୁଷ୍ଠରୋଗ ଆରୋଗ୍ୟ ହୁଏ ।

ଧାନ୍ୟାଦି ପାଚନ—ଅଁଳା ଓ ଖଦିର କାଷ୍ଠ କ୍ୱାଥରେ, ସୋମରାଜିମଞ୍ଜି ଚୂର୍ଣ୍ଣ ମିଶ୍ରିତ କରି ପାନ କରିଲେ ଧବଳ ନାମକ କୁଷ୍ଠରୋଗ ନିଷ୍ଟୟ ଭଲ ହୁଏ ।

ମଞ୍ଜିଷ୍ଠାଦି ପାଚନ—ମଞ୍ଜିଷ୍ଠା, ସୋମରାଜୀମଞ୍ଜି ( ବାକୁଚୀ ), ଗୁଳୁଞ୍ଚମଞ୍ଜି, ନିମ୍ବ, ହରିଡ଼ା, ହଳଦୀ, ଗୋଖୁରା, କୃଷ୍ଣପର୍ଣ୍ଣି, ବାସଙ୍ଗ, ଛତାବରୀ, ସହସ୍ର, ଭାଲିଆମଞ୍ଜି, ବାହୁଅଁଳା, ପିଙ୍ଗି, ଯାଷ୍ଟିମଧୁ, ଗୋକ୍ଷୁର, ପଟୋଳ, ବେଣାଚେର, ଗୁଳୁଚି ଓ ରକ୍ତଚନ୍ଦନ ଏହି କ୍ୱାଥକୁ ଯଥାବିଧିପାନକଲେ କୁଷ୍ଠବାତରକ୍ତ, କଣ୍ଡୁ ଓ ମଣ୍ଡଳରୋଗ ନାଶହୁଏ ।

ଯୋଗଦ୍ୱୟ—(୧) ଗୁଳୁଚି, ନିମ୍ବଛେଲି ଓ ପଟୋଳ, ନିମ୍ବ କ୍ୱାଥ ପାନକରି ବା (୨) ବାସଙ୍ଗ, ଗୁଳୁଚି, ଘରଘୋଡ଼ିଆ, ନିମ୍ବ, ଚିରେଇତା ଭ୍ରମରାଜ, ତ୍ରିଫଳା ଓ ପଟୋଳ ଏହାର କ୍ୱାଥ ମହୁ ସହିତ ପାନକଲେ ନାନାବିଧ ଅମ୍ଳପିତ୍ତ ଭଲ ହୁଏ ।

---

## ସ୍ତ୍ରୀରୋଗ ପାଚନ

ଅଶୋକ କ୍ୱାଥ—ଯଥା ନାମ୍ନପରେ ପ୍ରସ୍ତୁତ...

ଅଶୋକ ଛେଲି କ୍ୱାଥର ସହିତ ଗୋଦୁଗ୍ଧ ଯଥାମାତ୍ରାରେ ପାନ କଲେ ସ୍ତ୍ରୀଙ୍କର ପ୍ରଦର ରୋଗ ନଷ୍ଟ ହୁଏ ।

ଦୂର୍ବାଦ ପାଚନ—ଦାରୁହଳଦୀ, ଶୋଧିତ ରସାଞ୍ଜନ, ବାସଙ୍ଗ, ମୁଥା, ଚିରେଇତା, ବେଲଶୁଣ୍ଠା, ଭାଲିଅ, ଶୁଣ୍ଠୀ, ନାଲି ଭଇଁ ମୂଳ ଓ ଫୁଲ, ରକ୍ତଚନ୍ଦନ, ଏହାର କ୍ୱାଥ ମହୁ ସହିତ ପାନ କଲେ, ପିତ୍ତ,କୃଷ୍ଣ ଅରୁଣ, ଶ୍ଳେଷ୍ମଜ, ନୀଳ ଏବଂ ଶୁକ୍ଳବର୍ଣ୍ଣ ପ୍ରଦର ଓ ବେଦନା ପ୍ରଭୃତି ରୋଗ ଭଲ ହୁଏ ।

ଗର୍ଭବିଳାସ ପାଚନ—କୁରୁବେଲି, ସୁନାସି, ରକ୍ତଚନ୍ଦନ, ବାଉଅଁଳା, ଧନିଆଁ, ଗୁଡ଼ୁଚି, ମୁଥା, ବେଣାମୂଳ, ଦୁରାଲଭା, ଘର-ପୋଡ଼ିଆ ଓ ଅତୋସୀ ଏହାର କ୍ୱାଥ ଗର୍ଭିଣୀ ସ୍ତ୍ରୀ ପାନ କଲେ ତାଙ୍କର ନାନା ଦୋଷଯୁକ୍ତ ଅତିସାର, ରକ୍ତସ୍ରାବ ଓ ଜ୍ୱର ପ୍ରଭୃତି ସୂତିକା ରୋଗ ଭଲ ହୁଏ ।

ଅମୃତାଦ ପାଚନ—ଗୁଡ଼ୁଚି, ଶୁଣ୍ଠୀ, ଦାସକେରେଣ୍ଡାମୂଳ, ପସାରୁଣୀ, ଶାଳପର୍ଣ୍ଣୀ, ଛୋଟବଇଁକୋଳି ଅଙ୍କସନ୍ତି, ଗୋଖୁରମୂଳ ଏହାର କ୍ୱାଥରେ ଅଧତୋଳା ମହୁ ଦେଇ ପାନ କଲେ ନାନାବିଧ ସୂତିକା ରୋଗ ଭଲ ହୁଏ ।

ସହଚରାଦ ପାଚନ—ଦାସକେରେଣ୍ଡାମୂଳ, ମୁଥା, ଗୁଡ଼ୁଚି, ପସାରୁଣୀ, ଶୁଣ୍ଠୀ ଓ କୁରୁବେଲି, ଏହାର କ୍ୱାଥ ମଧୁ ସହିତ ପାନ କଲେ ସୂତିକାର ଜ୍ୱର ବେଦନାଦ ଭଲ ହୁଏ ।

ସୂତିକା ଦଶମୂଳ ପାଚନ—ଶାଳପର୍ଣ୍ଣୀ, କୃଷ୍ଣପର୍ଣ୍ଣୀ, ବୃହତୀ, (ନବାଙ୍କୁଡ଼ି), ଅଙ୍କସନ୍ତି, ଗୋକ୍ଷୁର, ନୀଳ ଦାସକେରେଣ୍ଡା, ପସାରୁଣୀ, ଶୁଣ୍ଠୀ, ଗୁଡ଼ୁଚି ଓ ମୁଥା ଏହି ସବୁର କ୍ୱାଥ ପିଇଲେ ସୂତିକା ସମସ୍ତର

ଜ୍ୱର, ଦାହ, ବାତଜ ରୋଗ ପ୍ରଶମିତ ହୁଏ । ଏହା ସୂତିକା ରୋଗର ପ୍ରତ୍ୟକ୍ଷ ଫଳପ୍ରଦ ଔଷଧ ।

ଗର୍ଭିନାଦ ପାଚନ—କୁଳୁବେଲ, ଅଚୋଶୀ, ମୁଥା, ମୋଚରସ, ଓ ଇନ୍ଦ୍ରଯବର କ୍ୱାଥ ପାନକଲେ ସ୍ତ୍ରୀମାନଙ୍କର ଚଳିତ ଗର୍ଭିଣୀର ପ୍ରଦାହ ଓ ଉଦର ବେଦନା ନଷ୍ଟ ହୁଏ ।

ଗର୍ଭିଣୀ ଜ୍ୱରଘ୍ନ ପାଚନ—ଯାଷ୍ଟିମଧୁ, ରକ୍ତଚନ୍ଦନ, ବେନାଙ୍କ-ନାଇମୂଳ, ବେଣାଚେର, ପଦ୍ମକାଠ ଓ ତେଜପତ୍ର ଯଥାବତ୍ ପ୍ରସ୍ତୁତ କ୍ୱାଥରେ ଚିନି ଓ ମହୁ ପରକ୍ଷ ଦେଇ ପାନକଲେ ଗର୍ଭିଣୀର ଜ୍ୱର ନଷ୍ଟ ହୁଏ ।

ଗର୍ଭଚନ୍ଦନାଦ ପାଚନ—ରକ୍ତଚନ୍ଦନ, ଅନନ୍ତମୂଳ, ଦ୍ରାକ୍ଷା ଓ ଲୋଧ ଏହାର କ୍ୱାଥ ଚିନି ସହ ପାନ କଲେ ଗର୍ଭିଣୀର ଜ୍ୱର ପ୍ରଶମିତ ହୁଏ ।

କୁଷ୍ଠାଦ୍ୟ ପାଚନ—କୁଡ଼, ବଚ, ଦେବଦାରୁ, ପିପଳୀ, ଶୁଣ୍ଠୀ, ଛୋଟଇଲା, କଟ୍‌ଫଳ, ମୁଥା, କଟୁକୀ, ଧନିଆଁ, ହରଡ଼ା, ଗଜପିପଳୀ କୁଆଳଭ, ଗୋକ୍ଷୁର, ନଷ୍ଟାବେଁକୋଳି, ଅଚୋଶୀ, ଗୁଡ଼ୁଚି, କଙ୍କଡ଼ା-ଶୃଙ୍ଗୀ ଓ କୃଷ୍ଣଜୀରକ ( ସିହାଜୀରା ) ଏଥିର କ୍ୱାଥରେ ଯଥାମାତ୍ରାରେ ସୈନ୍ଧବ ଓ ହିଙ୍ଗୁ ପରକ୍ଷ ଦେଇ ପାନ କଲେ ସ୍ତ୍ରୀଙ୍କ ଶୂଳ, କାସ, ଜ୍ୱର, ଶ୍ୱାସ, ମୂର୍ଚ୍ଛା, କମ୍ପ, ଶିରପିଡ଼ା, ପ୍ରଳାପ, ତୃଷ୍ଣା, ଦାହ, ତନ୍ଦ୍ରା, ଅତିସାର, ବମି, ବାତପିତ୍ତ ଓ କଫଜନିତ ସର୍ବପ୍ରକାର ରୋଗ ନଷ୍ଟ ହୁଏ ।

ମୃତଗର୍ଭ ପାଚନ—ତ୍ରିଫଳା, ତ୍ରିକଟୁ, କୁଡ଼, ଲୋଧ, ଇନ୍ଦ୍ରଯବ ଓ ଧାତୁକୀଫୁଲ ଏହି କ୍ୱାଥରେ ଗୁଡ଼ ପରକ୍ଷ ଦେଇ ପାନକଲେ ସ୍ତ୍ରୀଙ୍କର ମୃତଗର୍ଭ ବାହାର ହୁଏ ।

## ବମିରୋଗ ପାଚନ

ଚନ୍ଦନାଦ୍ୟ ପାଚନ—ଶ୍ୱେତଚନ୍ଦନ ୨ତୋଳା, ଅଁଳାରସ ୨ ତୋଳା ଏକତ୍ରକରି କଷ୍ଟ ପରିମାଣରେ ସ୍ୱର୍ଣ୍ଣମାକ୍ଷିକର ପରକ୍ଷ ଦେଇ ପାନ କଲେ ନାନାବିଧ ବମି ଆରୋଗ୍ୟ ହୁଏ ।

କପିଥ୍ୟାଦ—କଇଁଥର ୧ ତୋଳା ଅଁଳାରସ ୧ ତୋଳା ସହିତ କଷ୍ଟିତ ପରିମାଣରେ ପିପଳୀ ଚୂର୍ଣ୍ଣ ମରିଚ ଚୂର୍ଣ୍ଣ ଓ ମହୁ ସଂଯୁକ୍ତ କରି ସେବନ କଲେ ପ୍ରବଳ ବମି ରୋଗ ଭଲ ହୁଏ ।

ପର୍ପଟାଦ କ୍ୱାଥ—କ୍ଷେତ ପାପଡ଼ା ( ଘରପୋଡ଼ଆ ) ୨ତୋଳାକୁ କ୍ୱାଥକରି ୪ମସା ମହୁରେ ସରଖ ଦେଇ ପାନକଲେ ନାନାବିଧ ବମି ଆରାମ ହୁଏ ।

ମୁଗାଦ୍ୟାଦ ପାଚନ—ଭଜାମୁଗ ୧ ପଲର କ୍ୱାଥ କରି ତହିଁରେ ୨ପଲ ଖଇ ଓ କଷ୍ଟିତ ମହୁ ଓ ଚିନି ମିଶାଇ ପାନକଲେ ବମି ଅତିସାର ତୃଷ୍ଣା ଦାହ ପ୍ରଭୃତି ଭଲ ହୁଏ ।

---

## ବାଲରୋଗ ପାଚନ

ହରିଦ୍ରାଦ ପାଚନ—ହଳଦୀ, ଦାରୁହଳଦୀ, ଯାଷ୍ଟିମଧୁ, କୃଷ୍ଣପର୍ଣ୍ଣି ଓ ଇନ୍ଦ୍ରଯବ ଏହାର କ୍ୱାଥ ବାଳକ ମାତାଙ୍କୁ ପାନ କରାଇଲେ ବାଳକର ଜ୍ୱର ଓ ଅତିସାର ଭଲ ହୁଏ ଏବଂ ଧାତ୍ରୀର ସ୍ତନ ବିଶୋଧିତ ହୁଏ ।

ବିଲ୍ୱାଦ ପାଚନ—ବେଲଶୁଣ୍ଠା, ଧାତୁକୀଫୁଲ; ମୁଥା, ଲୋଧ ଓ ଗଜପିପଳୀ ଯଥାବତ୍ ପ୍ରସ୍ତୁତ କ୍ୱାଥ ବା ମହୁ ସହ ଅବଲେହ କରି ପାନ କରାଇଲେ ବାଳକଙ୍କ ଅତିସାର ଭଲ ହୁଏ ।

ଭଦ୍ରମୁସ୍ତାଦ କ୍ୱାଥ—ନାଗରମୁଥା, ହରିଡ଼ା, ନିମ୍ବ, ପଟୋଳ ଓ ଯାଷ୍ଟିମଧୁର କଷ୍ଟ କ୍ୱାଥ ପାନ କରାଇଲେ, ଶିଶୁଗଣର ଜ୍ୱର ନିଶ୍ଚୟ ଭଲ ହୁଏ ।

ସମଙ୍ଗାଦ୍ୟ ପାଚନ—ମଞ୍ଜିଷ୍ଠା, ଧାତୁକୀଫୁଲ, ଲୋଧ ଓ ଅନନ୍ତ ମୂଳର କ୍ୱାଥରେ ସ୍ୱର୍ଣ୍ଣମାକ୍ଷିକ ଓ ମହୁ ପରକ୍ଷେପ ଦେଇ ସେବନ କଲେ ଶିଶୁଙ୍କର ଅତିସାର ଭଲ ହୁଏ ।

ବାଲ୍ୟଚୂଡ଼ କଷାୟ—ବେଲଶୁଣ୍ଠୀ ଓ ଅମ୍ବର ଜୋଇଲିର କ୍ୱାଥରେ ଖଇଚୂର୍ଣ୍ଣ ମିଶାଇ ଶନୈଃ ପାନ କରିଲେ ବାଳକର ବମି ଓ ଅତିସାର ଭଲ ହୁଏ ।

ନାଗରାଦ୍ୟ ପାଚନ—ଶୁଣ୍ଠୀ, ଅତୋଷୀ, ମୁଥା କୁରୁଚେଲି ଓ ଇନ୍ଦ୍ରଯବର କ୍ୱାଥ ଶିଶୁକୁ ପାନ କରାଇଲେ ସକଳ ପ୍ରକାର ଅତିସାର ଭଲ ହୁଏ ।

ସାରିବାଦ୍ୟ କଷାୟ—ଶ୍ୱେତନନ୍ଦିନାଇମୂଳ, ତିଳ, ଲୋଧ ଓ ଯଷ୍ଟିମଧୁର କ୍ୱାଥ ଦ୍ୱାରା ମୁଖ ଧୌତ କରିଲେ ଶିଶୁମାନଙ୍କ ଲାଳସ୍ରାବ ଦୂର ହୁଏ ।

ପଟୋଳାଦ୍ୟ ପାଚନ—ପଟୋଳ, ତ୍ରିଫଳା, ନିମ୍ବ ଓ ହରିଦ୍ରା ହଳଦୀ ଏହାର କ୍ୱାଥ ପାନକଲେ ଶିଶୁଙ୍କର କ୍ଷତ, ବିସର୍ପ, ବିସ୍ଫୋଟ ଜ୍ୱର ଭଲ ହୁଏ ।

---

## ମୁଖରୋଗର ପାଚନ

ସପ୍ତଚ୍ଛଦାଦ୍ୟ ପାଚନ—ଛତିଅନାଛେଲି, ବେଣାଚେର ପଟୋଳ, ମୁଥା; ହରିଡ଼ା, କଟୁକୀ, ଯଷ୍ଟିମଧୁ, ସୁନାରୀମୂଳ, ରକ୍ତଚନ୍ଦନ ପ୍ରତ୍ୟେକ ସମାନ ଅଂଶେ ମିଳିତ ୨ ତୋଳାର କ୍ୱାଥକରି ଏ କ୍ୱାଥ ସେବନ କଲେ ମୁଖପାକ ଭଲ ହୁଏ ।

ପଟୋଳାଦ୍ୟ ପାଚନ—ପଟୋଳ, ଶୁଣ୍ଠୀ, ତ୍ରିଫଳା, ବିଖଲିସଗଣ୍ଡା, ଗୁଡ଼ମିଠ, କଟୁକୀ, ହଳଦୀ, ଦାରୁହଳଦୀ, ଗୁଳୁଚି ଏ ସମସ୍ତ ୨ତୋଳାର କ୍ୱାଥ କରି ମହୁ ମିଶାଇ ତିନି ଥର ପାନକଲେ ବା ମୁଖରେ ଧାରଣ କଲେ ନାନାବିଧ ମୁଖରୋଗ ଭଲ ହୁଏ ।

ତ୍ରିଫଳାଦ୍ୟ ପାଚନ—ତ୍ରିଫଳା, ଅଜାନବୃକ୍ଷ, କିସ୍‌ମିସ୍ ଜାଇଫଳର ପତ୍ର ଏ ସମସ୍ତ ଏକତ୍ରେ ଦୁଇତୋଳାର କ୍ୱାଥ ଅଥବା କେବଳ ତ୍ରିଫଳାର କ୍ୱାଥ ପାନ କଲେ ନାନାବିଧ ମୁଖରୋଗ ଭଲ ହୁଏ ।

ଜାତୀପତ୍ରାଦ୍ୟ କ୍ୱାଥ—ଜାଇଫୁଲ ପତ୍ର, ଗୁଡ଼ୁଚି, କିସ୍‌ମିସ୍, ଅଜାନବୃକ୍ଷ, ଦାରୁହଳଦ, ତ୍ରିଫଳା ଏହାର କ୍ୱାଥ କରି ଶୀତଳ ହେଲେ ତହିଁରେ ମହୁ ମିଶାଇ ତଦ୍ୱାରା ଗଣ୍ଡୂଷ ଧାରଣ କରିଲେ ମୁଖରୋଗ ଭଲ ହୁଏ ।

ପଞ୍ଚପଲ୍ଲବାଦ୍ୟ ପାଚନ—ପଟୋଳ, ନିମ୍ବ, ଜାମୁ, ଅମ୍ବ ଏବଂ ମାଳତୀ, ଏହାର କଅଁଳପତ୍ର ଆଣି ଯଥାବତ୍ ପ୍ରସ୍ତୁତ କ୍ୱାଥରେ ମହୁ ମିଶାଇ ତଦ୍ୱାରା ମୁଖ ଧୋଇଲେ; ମୁଖ ପାକ ଏବଂ ମୁଖରୋଗ ଭଲ ହୁଏ ।

---

# ପରିଶିଷ୍ଟ

## ବିବିଧ ରୋଗ ପାଚନ

ପୁନର୍ଣ୍ଣବାଦ୍ୟ ପାଚନ—ପୁନର୍ଣ୍ଣବା, ଦେବଦାରୁ ଶୁଣ୍ଠୀ, ଦଶମୂଳ ଏବଂ ହରିଡ଼ା, ଏହାର କ୍ୱାଥ ଗୁଗୁଳ ବା ଜଡ଼ାତେଲର ପରଶ ଦେଇ ପାନ କଲେ ବାତଜ ବିଦ୍ରଧି ରୋଗ ଭଲ ହୁଏ ।

ଅମୃତାଦ୍ୟ ପାଚନ—ଗୁଡ଼ୁଚି, ବାସଙ୍ଗ, ପଟୋଳ ମୁଥା ଛତିଅନାଛେଲି, ଖଇର, କୃଷ୍ଣବେତ, ନିମ୍ବପତ୍ର, ହଳଦୀ, ଦାରୁହଳଦୀ, ଏହାର କ୍ୱାଥ ପାନ କଲେ ବିଷଦୋଷ, ବିସର୍ପ, କୁଷ୍ଠ, ବିସ୍ଫୋଟ, କଣ୍ଡୂ, ମସୂରୀ ଏବଂ ବାତପିତ୍ତ ରୋଗ ଭଲ ହୁଏ ।

ବରୁଣ କ୍ୱାଥ—ବରୁଣ ମୂଳର ପ୍ରସ୍ତୁତ କ୍ୱାଥ ସ୍ୱର୍ଣ୍ଣମାକ୍ଷିକ ଓ ମହୁ ସହ ପାନ କଲେ ବହୁକାଳ ଜାତ ଗଣ୍ଡମାଳା ବିନଷ୍ଟ ହୁଏ ।

ତ୍ରିଫଳାଦ୍ୟ ପାଚନ—ତ୍ରିଫଳା, ସଜନାଛେଲି, ବରୁଣଛେଲି ଓ ଦଶମୂଳର କ୍ୱାଥ ଗୁଗୁଳ ବା ଗୋମୂତ୍ର ସହ ପାନକଲେ ଶ୍ଳୈଷ୍ମିକ ବିବିଧ ରୋଗ ଭଲ ହୁଏ ।

ଖଦରାଷ୍ଟକ—ଖଇର, ତ୍ରିଫଳା, ନିମ୍ବ, ପଟୋଳ, ଗୁଡ଼ୁଚି ଓ ବାସଙ୍ଗ ଏହାର କ୍ୱାଥ ପାନ କଲେ ହ୍ରମ ବସନ୍ତ, କୁଷ୍ଠ, ବିସର୍ପ, ବିସ୍ଫୋଟ (ପୋଡ଼ା, କଣ୍ଡୁ ଓ ଚୂଳକଣା) ପ୍ରଭୃତି ନାନାବିଧ ଚର୍ମରୋଗ ଭଲହୁଏ ।

ଭୂନମ୍ବାଦ କ୍ୱାଥ—ଚିରେଇତା, ବାସଙ୍ଗ, କଟୁକୀ, ପଟୋଳ, ତ୍ରିଫଳା, ରକ୍ତ ଚନ୍ଦନ ଓ ନିମ୍ବ ଏହାର କ୍ୱାଥ ପାନ କଲେ ବିସର୍ପ, ଦାହ, ଜ୍ୱର, ମୁଖଶୋଥ, ବିସ୍ଫୋଟ, ତୃଷା, ବମି ନିବାରିତ ହୁଏ ।

ଅମୃତାଦି ପାଚନ—ଗୁଡ଼ୁଚି ଓ ତ୍ରିଫଳାର ଶୀତଳ କ୍ୱାଥ ପିପଳୀ ଚୂର୍ଣ୍ଣ ଓ ମହୁ ସହ ପାନ କଲେ ସକଳ ପ୍ରକାର ଭକ୍ଷୁଦାନ ପ୍ରଶମିତ ହୁଏ ।

ରାସ୍ନାଦି ପାଚନ—ରାସ୍ନା, ଗୁଡ଼ୁଚି, ବାଡ଼ିଅଁଳା, ଯଷ୍ଟିମଧୁ, ଗୋକ୍ଷୁରା ଓ ଏରଣ୍ଡମୂଳ ଏହାର କ୍ୱାଥରେ ଜଡ଼ାତେଲ ପରଖ ଦେଇ ପାନ କଲେ ଅନ୍ତ୍ରବୃଦ୍ଧି ରୋଗ ଭଲ ହୁଏ ।

ମୃଦ୍ୱୀକାଦି ପାଚନ—ମୁନକା; ମରିଚ, ନାରଙ୍ଗ ଛେଲି ଓ ଯଷ୍ଟିମଧୁ ଏହାର କ୍ୱାଥ ଚିନି ସହ ପାନ କଲେ ପ୍ରତିଶ୍ୟାୟ, କଫ ଓ କାସରୋଗ ନିଶ୍ଚୟ ଭଲ ହୁଏ ।




ମୁଦ୍ରାକର—ଶ୍ରୀ ଦଶରଥି ଦାସ, ଦାଶରଥି ପ୍ରେସ, କଟକ ୧୯୪୯